ବେଦବ୍ୟାସ

ଲେଖକ :

**ଶ୍ରୀ ନିରାକାର ମହାଲିକ**



ପ୍ରଥମ ପ୍ରକାଶ : ମହାବିଷୁବ ସଂକ୍ରାନ୍ତି, ୧୯୮୮

ପ୍ରକାଶକ :

**ଶ୍ରୀ ଶ୍ରୀ ରାଧାକୃଷ୍ଣ ସଂସଦ,** ରେଢ଼ାଖୋଲ,
ସମ୍ବଲପୁର-୭୬୮୧୦୬

ପ୍ରଚ୍ଛଦ :
ଶ୍ରୀ କିଶୋର ଚନ୍ଦ୍ର ନାୟକ

ମୁଦ୍ରଣ :

**ରୋଜୀ ପ୍ରିଣ୍ଟର**

ରେଢ଼ାଖୋଲ, ସମ୍ବଲପୁର

ମୂଲ୍ୟ : **ଟ ୨୦-୦୦**

**VEDAVYAS**

Writer :
**Sri Nirakar Mahalik**



First Published :
Mahavishuba Sankranti, 1988
Publisher :
**Sri Sri Radhakrushna Sanskrutik Sansad**
Rairakhol, Sambapur-768106
Cover Design :
**Sri Kishore Chandra Nayak**
Printer :
**Rosy Printer**
Rairakhol, Sambalpur
Price : **Rs. 20.00**

# ସୂଚୀପତ୍ର

ଭୂମିକା, ଚରିତସୂଚୀ

# ସଂସଦ ତରଫରୁ

ବେଦବ୍ୟାସ ଓଡ଼ିଶାର ପ୍ରାଚୀନ ଐତିହ୍ୟ ମଧ୍ୟରୁ ଅନ୍ୟତମ । ଧର୍ମ ଚେତନା, ସାଂସ୍କୃତିକ ପରମ୍ପରା ଆଦି ଦୃଷ୍ଟିରୁ ଏ ପୀଠ ଅତ୍ୟନ୍ତ ମହାନ୍ । ଏ ସ୍ଥାନ ଉପରେ ଗବେଷଣା ମୂଳକ ପୁସ୍ତକ ଏ ଯାବତ୍ ପ୍ରକାଶିତ ହୋଇ ନଥିଲା । ଶ୍ରୀଯୁକ୍ତ ନଗରକାର ମହାଲିକଙ୍କର ଗବେଷଣା ମୂଳକ ପୁସ୍ତକ 'ବେଦବ୍ୟାସ' ଏହି ଅଭାବ ପୂରଣ କରି ପାରିଛି ।

ଶ୍ରୀଯୁକ୍ତ ମହାଲିକ ଏହି ପୁସ୍ତକଟିକୁ ପ୍ରକାଶନ ପାଇଁ ସଂସଦକୁ ଅନୁମତି ଦେଇଥିବାରୁ ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦ ତରଫରୁ ତାଙ୍କ ପାଖରେ ଗଭୀର କୃତଜ୍ଞତା ପ୍ରକାଶ କରୁଅଛୁ । ରେଢ଼ାଖୋଲରେ ନୂତନ ହୋଇ ପ୍ରତିଷ୍ଠା ହୋଇଥିବା ପ୍ରଥମ ପ୍ରିଣ୍ଟିଂ ପ୍ରେସ୍ 'ରେଖାପ୍ରିଣ୍ଟର୍ସ'ର ମାଲିକ ପୂର୍ବତନ ଅଧ୍ୟାପକ ଉଦୀୟମାନ ଶିଳ୍ପୋଦ୍ୟୋଗୀ ଶ୍ରୀଯୁକ୍ତ ଅନାଦି ଚରଣ ସାହୁ ବନ୍ଧୁ ଉଦାରତାର ସହ ପ୍ରକାଶନର ଦାୟିତ୍ୱ ନେଇଥିବାରୁ ଆମର ଏହି ସଂସଦ ତରଫରୁ ଧନ୍ୟବାଦ ଦେଉଛୁ । ରେଢ଼ାଖୋଲ କଲେଜର ଅଧ୍ୟାପିକା ଶ୍ରୀମତୀ ସବିତା ମିଶ୍ର କଷ୍ଟ ସ୍ୱୀକାର କରି ପାଣ୍ଡୁଲିପି ତଥା ପ୍ରୁଫ୍ ସଂଶୋଧନ କରିଥିବାରୁ ସଂସଦ ତରଫରୁ କୃତଜ୍ଞତା ଜ୍ଞାପନ କରୁଅଛୁ ।

**ଶିବ ପ୍ରସାଦ ପ୍ରଧାନ**
ସଂପାଦକ
ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ
ସଂସଦ, ରେଢ଼ାଖୋଲ

ମହାବିଷୁବ ସଂକ୍ରାନ୍ତି, ବର୍ଦ୍ଧମାନ-୨୦୪୫
ଖ୍ରୀଷ୍ଟାବ୍ଦ ୧୩ । ୪ । ୧୯୮୮

# ଭୂମିକା

ପ୍ରାଚୀନ କାଳରେ ଭାରତର ଋଷି ଯେଉଁ ସାର୍ବଜନୀନ ଆଦର୍ଶ ଓ ନୀତି ନିର୍ଦ୍ଧାରଣ କରିଥିଲେ ତାହା ବିଶ୍ୱର ମାନବ ସମାଜ ପକ୍ଷରେ କଲ୍ୟାଣ ପ୍ରଦ ଅଟେ । ଶତ ସହସ୍ର ବର୍ଷ ଧରି ଆମର ପୂର୍ବପୁରୁଷଙ୍କ ଆଦର୍ଶ ଓ ଚିନ୍ତାଧାରା କିପରି ଥିଲା ତାହା ଭାରତୀୟ ଇତିହାସ, ବେଦ, ଉପନିଷଦ, ଗୀତା, ବୈଦିକ ସାହିତ୍ୟ, ଅନୁଶୀଳନ କଲେ ଜଣାଯାଏ । ବେଦର ମନ୍ତ୍ର ଦ୍ରଷ୍ଟା ଋଷି, ଉପନିଷଦର ତପସ୍ୱୀ ମୁନି ଓ ଗୀତାରେ ଶ୍ରୀକୃଷ୍ଣ ମାନବ ସଂସ୍କୃତିକୁ ସୂକ୍ଷ୍ମରୁ ସୂକ୍ଷ୍ମତର କରି ସାର୍ବଜନୀନ କରି ପାରିଛନ୍ତି ଯାହାକି ସର୍ବଦେଶରେ ସର୍ବକାଳରେ ପ୍ରଯୁଜ୍ୟ । ପରି ଦୃଶ୍ୟମାନ ପ୍ରକୃତି ସୃଷ୍ଟିର ସର୍ବସ୍ୱ ନୁହେଁ । ଜୀବାତ୍ମା ସମ୍ମୁଖରେ ଶରୀର ଯେପରି, ପରମାତ୍ମାତତ୍ତ୍ୱ ସମ୍ମୁଖରେ ପ୍ରକୃତି ତତ୍ତ୍ୱ ସେପରି ତୁଚ୍ଛ । ଦେହକୁ ସାଧନ ରୂପେ ନେଇ ଜୀବାତ୍ମା ପରମାତ୍ମାଙ୍କ ଦିଗରେ ଅଗ୍ରସର ହେଉଥାଏ । ଦେହଯାତ୍ରା ପାଇଁ ସଂସାରକୁ ବ୍ୟବହାର କରିବା ଯେପରି ଅନିବାର୍ଯ୍ୟ, ଦିନେ ଏହି ସଂସାରକୁ ତ୍ୟାଗ କରିବା ମଧ୍ୟ ସେହିପରି ଅଲଂଘନୀୟ ।

ଭାରତୀୟ ସଂସ୍କୃତିର ବିଶିଷ୍ଟ ଧାରା ସାର୍ବଜନୀନ ଓ ବାସ୍ତବବାଦ । ଏହି ସଂସ୍କୃତି, ଏହି ସଂସାରରେ ରହି ଉପଭୋଗ କରିବାକୁ ଶିକ୍ଷାଦିଏ, ପରନ୍ତୁ ସେଥିରେ ନିଜକୁ ହଜାଇ ଦେବାକୁ ଶକ୍ତ ମନା କରାଯାଇଛି । ସଂସାରରେ କେହି କେହି ଭୋଗବାଦର ଓ କେହି କେହି ତ୍ୟାଗବାଦର ପ୍ରଶଂସା କରିଥାନ୍ତି, କେତେକ କହନ୍ତି ବେଦ, ଉପନିଷଦ ନିଷ୍କ୍ରିୟତାର ଜୀବନଯାପନକୁ ଶିକ୍ଷାଦିଏ । ମହର୍ଷି ବେଦବ୍ୟାସ କୁରୁକ୍ଷେତ୍ରରେ ହୋଇଥିବା ଯୁଦ୍ଧରେ ସକଳ ଘଟଣା ସହିତ ଧୃତରାଷ୍ଟ୍ରଙ୍କୁ ପରିଚିତ କରାଇବା ସକାଶେ ସଞ୍ଜୟଙ୍କୁ ଦିବ୍ୟ ଦୃଷ୍ଟି ଦେଇଥିଲେ । ସଞ୍ଜୟ ଯୁଦ୍ଧର ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି ଶ୍ରୀକୃଷ୍ଣ ଯେତେବେଳେ ଯୁଦ୍ଧ ପୂର୍ବରୁ ଅର୍ଜ୍ଜୁନଙ୍କ ରଥକୁ ନେଇ ଉଭୟ ସେନା ମଧ୍ୟରେ ରଖିଲେ, ଅର୍ଜ୍ଜୁନ, ନିଜର ଆତ୍ମୀୟ ସ୍ୱଜନମାନେ ଯୁଦ୍ଧପାଇଁ ଏକତ୍ର ହୋଇଥିବାର ଦେଖି କହିଥିଲେ "ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି" ତାଙ୍କର ଦେହ କ୍ଳାନ୍ତ ହେଉଛି, ରାଜୈଶ୍ୱର୍ଯ୍ୟ ମୋର ଆବଶ୍ୟକ ନାହିଁ ଇତ୍ୟାଦି ଶ୍ରୀକୃଷ୍ଣ କହିଥିଲେ, "କ୍ଳୈବ୍ୟଂ ମା ସ୍ମ ଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ । କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ॥" ଆର୍ଯ୍ୟଗଣ ଯୁଦ୍ଧକ୍ଷେତ୍ରରୁ ପଛଘୁଞ୍ଚା ଦିଅନ୍ତି ନାହିଁ ସଂସାର କ୍ଷେତ୍ରରୁ କାୟକ୍ଳେଶ ଭୟରେ ପଳାୟନ କରିବା ଉଚିତ ନୁହେଁ । ଏହା କ୍ଳୀବତା, ଓ ନିଷ୍କ୍ରିୟତା ଓ ନପୁଂସକତା ଅଟେ ।

ଆଧ୍ୟାତ୍ମବାଦରେ ନିଷ୍କ୍ରିୟତାର ଭ୍ରାନ୍ତଗୀତା ଦୂରକରିଛନ୍ତି । ନିଷ୍କ୍ରିୟତା ପରିବର୍ତ୍ତେ ନିଷ୍କ୍ରିୟ ଜୀବନଯାପନ ହିଁ ଆମ ସଂସ୍କୃତିର ମୌଳିକ ସିଦ୍ଧାନ୍ତ ଅଟେ ।

ଆମ ଭାରତୀୟ ସଂସ୍କୃତିକୁ ମହର୍ଷି ବେଦବ୍ୟାସ ଯେପରି ମହନୀୟ କରିଛନ୍ତି, ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା ନିକଟସ୍ଥ "ବେଦବ୍ୟାସ" ଦର୍ଶନୀୟ ସ୍ଥାନ ମଧ୍ୟରେ ସେପରି ସ୍ମାରକୀ ହୋଇରହିଛି । ପ୍ରଥମେ ମୋର ସଢ଼ୁଭାଇ ଡଃ ପର୍ଶୁରାମ ଧଳ "ବେଦବ୍ୟାସ" ଦର୍ଶନ କରି ସେ ବିଷୟରେ କିଛି ଲେଖିବାପାଇଁ ପରାମର୍ଶ ଦେଇଥିବାରୁ ମୁଁ ତାଙ୍କ ନିକଟରେ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ବେଦବ୍ୟାସ ସମ୍ପର୍କରେ ମୋର କେତେକ ଲେଖା ଗୁରୁକୁଳ ବୈଦିକ ଆଶ୍ରମ, ବେଦବ୍ୟାସର ମାସିକ ମୁଖପତ୍ର "ଆଶ୍ରମ ଜ୍ୟୋତିରେ" ପ୍ରକାଶ ପାଇଛି ଏବଂ ଆକାଶବାଣୀ ସମ୍ବଲପୁରଙ୍କ ସୌଜନ୍ୟରୁ ପ୍ରସାରିତ ହୋଇଛି । ସୁନ୍ଦରଗଡ଼ ସରକାରୀ ମହାବିଦ୍ୟାଳୟର ଲାଇବ୍ରେରୀକୁ ମୋର ଗବେଷଣା କାର୍ଯ୍ୟରେ ଉପଯୋଗ କରିବାର ସୁଯୋଗ ଦେଇଥିବାରୁ ଅଧ୍ୟାପକ ଶ୍ରୀ ସଦାନନ୍ଦ ପାତ୍ର ଏବଂ ଲାଇବ୍ରେରିଆନ ଶ୍ରୀଯୁକ୍ତ ସୁରେନ୍ଦ୍ର କୁମାର ପୁରୋହିତଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପୁସ୍ତକରେ ସନ୍ନିବେଶିତ ଆଲୋକ ଚିତ୍ର ଗୁଡ଼ିକୁ ସୌଖୀନ ଫଟୋ ଗ୍ରାଫର ଓ ସୁନ୍ଦରଗଡ଼ର ଆଥେଲେଟିକ୍ ଆସୋସିଏସନର ମେମ୍ବର ଶ୍ରୀ ରାଜେନ୍ଦ୍ର କୁମାର ବହିଦାର ଯୋଗାଇ ଦେଇଥିବାରୁ ସେ ଧନ୍ୟବାଦର ପାତ୍ର । ବେଦବ୍ୟାସ ପୁସ୍ତକର ବେଦବ୍ୟାସଙ୍କ ଗଳ୍ପ ପରିଚ୍ଛେଦ, ପୌରାଣିକ ପରିଚ୍ଛେଦ, ବ୍ୟାସଙ୍କ ପରିଚୟ, ଦର୍ଶନୀୟସ୍ଥାନ, ବେଦବ୍ୟାସର ପାରିପାର୍ଶ୍ୱିକ ଇତିହାସ ଏବଂ କ୍ଷେତ୍ର ପରିଚୟ ପରିଚ୍ଛେଦ ଗୁଡ଼ିକୁ ପଦ୍ମପୁର ଅଞ୍ଚଳ କଲେଜର ଅଧ୍ୟାପକ, ଗାଳ୍ପିକ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଭ୍ୟ ଶ୍ରୀ ନାରାୟଣ ବୃଷେଠ୍ ଏବଂ ବେଦ ଓ ବୈଦିକ ସାହିତ୍ୟ ପରିଚ୍ଛେଦ ଗୁଡ଼ିକୁ ବକ୍ସି ଜଗବନ୍ଧୁ କଲେଜର ଅଧ୍ୟାପକ ଶ୍ରୀ ଆର୍ଯ୍ୟ କୁମାର ସାହୁ ସଂଶୋଧନ କରିଥିବାରୁ ମୁଁ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜଣାଉଛି ।

ଡେଙ୍ଗୀଭାଡ଼ି, ସୁନ୍ଦରଗଡ଼
କୁମାରପୂର୍ଣ୍ଣିମା, ଖ୍ରୀଷ୍ଟାବ୍ଦ
୨୭ । ୧୦ ।୧୯୮୭

ବିନୀତ ଲେଖକ
**ଶ୍ରୀ ନିରାକାର ମହାଲିକ**

# ଚିତ୍ରସୂଚୀ





# ପ୍ରଥମ ପରିଚ୍ଛେଦ

## ବେଦବ୍ୟାସ

ଓଡ଼ିଶାରେ ଦର୍ଶନୀୟ ସ୍ଥାନ ବେଦବ୍ୟାସ କହିଲେ ଆମର ରାଉରକେଲ୍ ନିକଟସ୍ଥ ପାନପୋଷରେ ଶଙ୍ଖ ଓ କୋଇଲ ନଦୀର ସଙ୍ଗମ ସ୍ଥଳର ନଦୀ କୂଳ ଏବଂ ତାର ଦକ୍ଷିଣ କୂଳରେ ଥିବା ଅନୁଚ୍ଚ ପାହାଡ଼ ଶ୍ରେଣୀ ଆଖି ଆଗରେ ଭାସି ଆସେ । ଓଡ଼ିଶାର ନଦ, ନଦୀ, ବନ, ପର୍ବତ, ସୁବିସ୍ତୃତ ବେଳାଭୂମି, ହ୍ରଦ, ନଦୀର ସଙ୍ଗମ ସ୍ଥଳ ନିର୍ଝରଣୀ ଆଦି ଅତ୍ୟନ୍ତ ମନୋମୁଗ୍ଧକର ପ୍ରାକୃତିକ ସମ୍ପଦ ପ୍ରତ୍ୟେକ ଦର୍ଶକର ମନୋବିନୋଦ ଲାଗି ପ୍ରକୃଷ୍ଟ ସ୍ଥଳ ହୋଇ ରହି ଆସିଛି । ଓଡ଼ିଶାର ଉତ୍ତରରେ ବିହାର, ପଶ୍ଚିମରେ ମଧ୍ୟ ପ୍ରଦେଶକୁ ଲାଗି ଘନଜଙ୍ଗଲ, ପାହାଡ଼ ପର୍ବତ ଘେରା ସୁନ୍ଦରଗଡ଼ ଜିଲ୍ଲାର ରାଉରକେଲା ସନ୍ନିକଟସ୍ଥ 'ବେଦବ୍ୟାସ' ପ୍ରତ୍ୟେକ ଦର୍ଶକ ଓ ତୀର୍ଥଯାତ୍ରୀଙ୍କୁ ଆକୃଷ୍ଟ କରୁଛି । ଶୁଭ୍ରମନା ଶଙ୍ଖ ଓ କୃଷ୍ଣମନା କୋଇଲର ସମ୍ମିଳନରେ ତୀର୍ଥ ରାଜ 'ବେଦବ୍ୟାସ' ତାର ଆର୍ଯ୍ୟ ସଂସ୍କୃତିକୁ ପ୍ରାଣବନ୍ତ ଓ ଅନବଦ୍ୟ କରିପାରିଛି ।

ବେଦବ୍ୟାସ ତୀର୍ଥ ସ୍ଥାନ ସୁନ୍ଦରଗଡ଼ ଜିଲ୍ଲାର ସଦର ମହକୁମା ଠାରୁ ୧୦୫ କିଲୋମିଟର ଦୂର, ପାନପୋଷଠାରୁ ୫ କି: ମି: ଦୂର ଏବଂ ରାଉରକେଲା ଠାରୁ ୧୩ କିଲୋମିଟର ଦୂର ଏହି ସ୍ଥାନ ସମ୍ବଲପୁର-ରାଉରକେଲ୍ ରାଜ୍ୟ ରାଜ ପଥ ୧୦ ନମ୍ବର (S. H. 10) ଠାରୁ ୩ କିଲୋମିଟର ଦୂର ହୋଇ ଥିବାରୁ ବସ ଯାତ୍ରୀମାନଙ୍କୁ ବିଶେଷ ଅସୁବିଧା ହୁଏ ନାହିଁ । ଏହି ସ୍ଥାନ ଦକ୍ଷିଣ-ପୂର୍ବ ଖଡ଼ଗପୁର-ଝାରସୁଗୁଡ଼ା ମଧ୍ୟରେ ରାଉରକେଲ୍ ରେଳଷ୍ଟେସନରୁ ଓହ୍ଲାଇ ଯିବାକୁ ପଡ଼ିଥାଏ । ସ୍ଥାନଟି ୨୨°-୧୪' ଉତ୍ତର ଅକ୍ଷାଂଶ ଏବଂ ୮୪°-୪୮ ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଏହି ସ୍ଥାନଟି ରାଜ୍ୟ ରାଜଧାନୀ ଭୁବନେଶ୍ୱର ଠାରୁ ୫୦୭ କିଲୋମିଟର ଏବଂ ସମ୍ବଲପୁରଠାରୁ ୧୯୦ କିଲୋମିଟର ଦୂର ।

ଉକ୍ତ ସ୍ଥାନମାନଙ୍କ ସହିତ ସଡ଼କ ପଥ ଯୋଗେ ସଂଯୋଗ ହୋଇଥିଲେ ମଧ୍ୟ ସାଧାରଣ ବସଯାତ୍ରୀଙ୍କ ପାଇଁ ୩ କିଲୋମିଟରର ରାସ୍ତା ପାଦରେ ଚାଲିବାକୁ ପଡ଼ିଥାଏ ।

ଏହି ସ୍ଥାନର ସାଧାରଣ ବାର୍ଷିକ ହାରହାରି ବୃଷ୍ଟିପାତ ୧୬୪୭.୬ ମିଲି ମିଟର (୬୪.୮୬ ଇଞ୍ଚ) ମେ ଜୁନ୍ ମାସରେ ସାଧାରଣ ୪୧ ଡିଗ୍ରୀ ସେଣ୍ଟିଗ୍ରେଡ୍ (୧୦୫.୩ ଡିଗ୍ରୀ ଫାରେନ୍‌ହିଟ୍) ଏବଂ ଦିନେ ଦିନେ ସର୍ବୋଚ୍ଚ ଉତ୍ତାପ ୪୭ ଡିଗ୍ରୀ ସେଣ୍ଟିଗ୍ରେଡ୍ (୧୧୬.୬ ଡିଗ୍ରୀ ଫାରେନ୍‌ହିଟ) ହୋଇଥାଏ । ଡିସେମ୍ବର ମାସରେ ସାଧାରଣ ସର୍ବନିମ୍ନ ଉତ୍ତାପ ୨୭ ଡିଗ୍ରୀ ସେଣ୍ଟିଗ୍ରେଡ୍ (୩୮.୭ ଡିଗ୍ରୀ ଫାରେନହିଟ) ହୋଇଥାଏ ।

ବେଦବ୍ୟାସ କ୍ଷେତ୍ରରେ ଓଡ଼ିଆ ସମସ୍ତେ ବୁଝି ପାରିଲେ ମଧ୍ୟ ଅନ୍ୟାନ୍ୟ ଭାଷା ଯଥା—ମୁଣ୍ଡାରି, କୁରୁଖ ବା ଓରାଓଁ, ହିନ୍ଦି, ଖଡ଼ିଆ, କିଷାନ, ଲରିଆ, ବେଙ୍ଗଲ, ଉର୍ଦ୍ଦୁ, ହୋ, କୋହ୍ଲି, ତେଲ୍‌ଗୁ, କୁଇ, ଭୂମିଜ, ପଞ୍ଜାବି, ଭାଷା କେତେକ ବୁଝିଥାନ୍ତି । ଇସ୍ପାତ ନଗର ନିକଟରେ ଗଢ଼ି ଉଠିଲା ପରେ ଭାରତର ସବୁ ଶ୍ରେଣୀର ଲୋକ ଏଠାକୁ ଆସିଥାନ୍ତି ।

ଏଠାରେ ପି. ଡବ୍ଲ୍ୟୁ. ଡି. ବିଶ୍ରାମାଗାର ଏବଂ ରାଜସ୍ୱ ବିଭାଗର ଗୋଟିଏ ବିଶ୍ରାମାଗାର ଅଛି । ରାଉରକେଲାର ଇସ୍ପାତ୍ ନଗରୀ ଅତି ନିକଟରେ ଥିବାରୁ ସେଠାରେ ତିନିଗୋଟି ଯଥାକ୍ରମେ ଧର୍ମଶାଳା ୧—ଲକ୍ଷ୍ମୀ ନାରାୟଣ ଧର୍ମଶାଳା, ୨—ହରିନାରାୟଣ ଭବନ, ୩—ସର୍ବ ଜନୀନ ଧର୍ମଶାଳାରେ ରହିବାର ସୁବିଧା ଅଛି । ଟ୍ରାଭଲରସ୍ ଚେକ୍ ନେଇ ଆସିଥିବା ଯାତ୍ରୀଙ୍କ ପାଇଁ ରାଉରକେଲା ଠାରେ ଷ୍ଟେଟ ବ୍ୟାଙ୍କ ଅଫ ଇଣ୍ଡିଆ, ସେଣ୍ଟ୍ରାଲ ବ୍ୟାଙ୍କ ଅଫ ଇଣ୍ଡିଆ, ଇଉନାଇଟେଡ୍ ବ୍ୟାଙ୍କ ଅଫ ଇଣ୍ଡିଆ, ଇଉନାଇଟେଡ୍ କମରସିଆଲ ବ୍ୟାଙ୍କ, ବ୍ୟାଙ୍କ ଅଫ ବରୋଦା, ବ୍ୟାଙ୍କ ଅଫ ଇଣ୍ଡିଆ, ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ ଏବଂ ଇଉନିୟନ ବ୍ୟାଙ୍କ ଅଫ ଇଣ୍ଡିଆର ସୁବିଧା ଅଛି ।

ବେଦବ୍ୟାସର ଆଉ ଏକ ମହତ୍ତ୍ୱପୂର୍ଣ୍ଣତା ହେଲା ଏଠାରେ ଶବ ସଂସ୍କାର କଲେ ସ୍ୱର୍ଗ ପ୍ରାପ୍ତି ହୁଏ ଏବଂ ଏହି ତୀର୍ଥରେ ସ୍ନାନ କଲେ ସମସ୍ତ ପାପ ନାଶନ ହୁଏ । ତେଣୁ ବେଦବ୍ୟାସ ଘାଟରେ ଦୂରକୁ ନଦୀ କୂଳରେ ଅଧିକାଂଶ ଶବ ସତ୍କାର କରିଥାନ୍ତି । ଏଠାରେ ଶିବ ରାତ୍ରୀରେ ଯେଉଁ ମେଳା ହୁଏ ସେଥିରେ ବିଭିନ୍ନ ସ୍ଥାନରୁ ପ୍ରାୟ ୫୦ ହଜାରରୁ ଊର୍ଦ୍ଧ୍ୱ ଭକ୍ତମାନଙ୍କର ସମାଗମ ହୋଇଥାଏ ।

# ଦ୍ୱିତୀୟ ପରିଚ୍ଛେଦ

## ବେଦବ୍ୟାସଙ୍କ ଜନ୍ମ

ଶଙ୍ଖ ଏବଂ କୋଇଲର ସଙ୍ଗମ ସ୍ଥଳ ସେହି ଭୂଖଣ୍ଡଟି ନାନା ଜାତି ପୁଷ୍ପର ସୁରଭିରେ ଆମୋଦିତ । କୁଳୁ କୁଳୁ ନାଦିନୀ ନଦୀ ଦ୍ୱୟର କୂଳେ କୂଳେ ନବ କିଶଳୟରେ ସମୃଦ୍ଧ ବୃକ୍ଷ ରାଜି ଅପୂର୍ବ ଶୋଭା ବର୍ଦ୍ଧନ କରୁଛନ୍ତି । ପ୍ରସ୍ଫୁଟିତ ପୁଷ୍ପ କଦମ୍ବରୁ ଗୁଞ୍ଜନରତ ମଧୁପମାନେ ଅସରନ୍ତି ଉଲ୍ଲାସରେ ମଧୁ ସଂଗ୍ରହ କରୁଥାନ୍ତି । ଶୁଭ୍ରନୀର ଶଙ୍ଖ ଓ କୃଷ୍ଣନୀର କୋଇଲର ସମ୍ମିଳନରେ ତୀର୍ଥରାଜ 'ବେଦବ୍ୟାସ' ତାର ଆର୍ଯ୍ୟ ସଂସ୍କୃତିକୁ ପ୍ରାଣବନ୍ତ ଓ ଅନବଦ୍ୟ କରିଥିଲା । ପବନର ହିଲ୍ଲୋଳରେ ସଙ୍ଗମ ସ୍ଥଳର ଉଚ୍ଛଳ ଲହରୀର ମଧୁରିମାକୁ ସେ ଦିନ ଉପଭୋଗ କରୁଥାନ୍ତି ଆର୍ଯ୍ୟ ମୁନି ପରାଶର । ଆର୍ଯ୍ୟ ଋଷି ମଧୁର ଆସ୍ୱାଦରେ ଆତ୍ମ ବିସ୍ମୃତ ହୋଇ ସ୍ତୁତି କରି ଚାଲିଥାନ୍ତି—

"ମଧୁ ବାତା ଋତାୟତେ, ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ, ମଧୁନକ୍ତ ମୁତୋଷସୋ
ମଧୁମତ୍ ପାର୍ଥିବଂ ରଜଃ, ମଧୁ ଦ୍ୟୌର ସ୍ତୁନଃ ପିତା ।
ମଧୁ ମାନ୍ନୋ ବନସ୍ପତି ର୍ମଧୁମାନ୍ ଅସ୍ତୁ ସୂର୍ଯ୍ୟଃ
ମାଧ୍ୱୀର୍ଗାବୋ ଭବନ୍ତୁ ନଃ ॥"

କୈବର୍ତ୍ତ ରାଜ କନ୍ୟା ମତ୍ସ୍ୟଗନ୍ଧା ଆଣିଲ ବାହି ତାର ନୌକାଟିକୁ ସଙ୍ଗମ ସ୍ଥଳୀର ଗଣ୍ଡରେ ଉଚ୍ଛଳ ତରଙ୍ଗ ଅତିକ୍ରମ କରି ଆଗେଇ ଆସୁଥାଏ ନିକଟରୁ ଅତି ନିକଟକୁ । ନୌକାରୁ ସମସ୍ତ ଯାତ୍ରୀ ଓହ୍ଲାଇଲେ ପରେ ନଦୀ ପାର ହେବା ପାଇଁ ଆର୍ଯ୍ୟ ମୁନି ପରାଶର ବସିଲେ ନୌକାରେ । ଉଦାସ ମନରେ ଆର୍ଯ୍ୟ ମୁନି ତାଙ୍କ କଣ୍ଠ ନିଃସ୍ୱନରେ ଗାନ କରୁଥାନ୍ତି—

"ଚରନ ବୈ ମଧୁ ବିନ୍ଦତି ଚରନ ସ୍ୱାଦୁ ମୃଦୁ ସ୍ୱରମ୍
ସୂର୍ଯ୍ୟସ୍ୟ ପଶ୍ୟଶ୍ରେମାଣଂ ଯୋନ ତନ୍ଦ୍ରୟତେ ଚରନ ।
ଚରୈବେତ୍ତି ଚରୈବେତ୍ତି ।" (ଐତେରେୟ ବ୍ରାହ୍ମଣ)

ଆର୍ଯ୍ୟ ମୁନିଙ୍କର ଧ୍ୟାନ ନିମୀଳିତ ଚକ୍ଷୁ ନିକ୍ଷେପ ହେଲା ନୌକାର ନାୟିକା ମତ୍ସ୍ୟଗନ୍ଧା ଉପରେ । ମତ୍ସ୍ୟଗନ୍ଧା ବୋଧହୁଏ ଅପେକ୍ଷା କରିଥାଏ ଅନ୍ୟ ଯାତ୍ରୀଙ୍କ ଆସିବା ପର୍ଯ୍ୟନ୍ତ ।

ଆର୍ଯ୍ୟ ମୁନି ପ୍ରଶ୍ନ କଲେ, "ସମସ୍ତ ଅତିବାହିତ ହୋଇ ଯାଉଛି ମୋତେ ପାରିକରି ଦେଇ ପାରିବ ନାୟିକା ?"

କାଳ ବିଳମ୍ବ ନକରି ରଜ କନ୍ୟା ମତ୍ସ୍ୟଗନ୍ଧା ସଲଜ୍ଜ ଗ୍ରୀବାଭଙ୍ଗୀରେ 'ହୁଁ'ଟି ମାରି ନୌକାଟି ମେଲି ଦେଲା ସେହି ସୁଗଭୀର ଗଙ୍ଗା ମଧ୍ୟରେ ।

ଏକାକୀ ମହାମୁନି ପରାଶରଙ୍କୁ ନେଇ ରୂପସୀ ତରୁଣୀ ଶଙ୍କାହୀନ ଚିତ୍ତରେ ଗଭୀର ଜଳରେ ନୌକା ବାହିବାକୁ ଲାଗିଲା । ମହାମୁନି ଏକ ଦୃଷ୍ଟିରେ ଲକ୍ଷ୍ୟ କରୁଥାନ୍ତି ଲୁବ୍‌ଧ ଲହରୀର ଫେନିଳ ଜଳରାଶି ଆହ୍ଲାଦର ତାଳେ ତାଳେ ବାରମ୍ବାର ଚୁମ୍ବନ କରି ଯାଉଥିଲା କୈବର୍ତ୍ତ କନ୍ୟାର ଯୌବନ ଉଜ୍ଜ୍ୱଳ ଦେହ ଶ୍ରୀକୁ । ଅର୍ଦ୍ଧସିକ୍ତ କଷାୟ ବସନ ତଳେ ଉଦ୍ଭିନ୍ନ କମଳ କୋରକର ବକ୍ଷୋଜ ଆଡ଼େ ଚାହିଁ ସଂସାର ତ୍ୟାଗୀ ମନ୍ତ୍ରଦ୍ରଷ୍ଟା ମହାମୁନି ଆତ୍ମ ବିସ୍ମୃତ ହୋଇ ପଡ଼ିଲେ । ସେତେବେଳେ ବେଦର କୌଣସି ମନ୍ତ୍ର ସ୍ମରଣ ହେଉ ନଥିଲା । ମହାମୁନିଙ୍କର ସଂସାର କାମନା ବଳବତ୍ତର ହୋଇ ଉଠି-ଥିଲା । ତାଙ୍କର ସନ୍ତାନ ଧାରଣ ପାଇଁ କୈବର୍ତ୍ତ କନ୍ୟା ହିଁ ଉପଯୁକ୍ତ ଆଧାର ଭାବି ମତ୍ସ୍ୟଗନ୍ଧା ନିକଟରେ ନିଜର ମନୋବାସନା ବ୍ୟକ୍ତ କରି କାମ ଭିକ୍ଷା କଲେ ।

ଯୁଗ ଯୁଗର ବ୍ରହ୍ମଚର୍ଯ୍ୟ ସାଧନା ପରେ ଆର୍ଯ୍ୟ ମୁନି ପରାଶରଙ୍କର ଚିତ୍ତଭିତର କାମନା ଏହି ଶଙ୍ଖ ଓ କୋଇଲିର ସଙ୍ଗମ ସ୍ଥଳରେ କାହିଁକି ଯେ ଜାଗ୍ରତ ହୋଇ ଉଠିଲା ସେ କଥା କିଏ କହିବ ?

( ୨ )

ଶଙ୍ଖ କୋଇଲିର ଲହରୀ ପରେ ଲହରୀ ଆସି ପିଟି ହେଉଥାଏ ଅକୁଣ୍ଠହୀନ ନୌକାଟି ଉପରେ । ମହାମୁନି ପରାଶରଙ୍କର ଆବେଦନର ଉତ୍ତର

ଦେବାର ସାହସ ସଂଗ୍ରହ କରିବାର ଶକ୍ତି ମତ୍ସ୍ୟଗନ୍ଧାର କାହିଁ ? ମତ୍ସ୍ୟଗନ୍ଧାର ଆଖିଲ ହଠାତ୍ ହଜିଲି ବସିଲି ତାଳ ଓ ଲୟ । ମତ୍ସ୍ୟଗନ୍ଧା ଅଭିଭୂତା ପରି ସନ୍ନିକଟରେ ସ୍ତବ୍ଧ ରହିଲି ଖାଲି ଆର୍ଯ୍ୟ ମୁନିଙ୍କ ଆଡ଼େ ।

ଆଖିଲର ମଙ୍ଗ ଧରୁ ଧରୁ ଅବନତ ବଦନରେ ମତ୍ସ୍ୟଗନ୍ଧା କହିଲ "ପ୍ରଭୁ, ମୁଁ ଅଜ୍ଞବ କୈବର୍ତ୍ତ କନ୍ୟା, ମୋର ଶରୀରରେ ଅଗରୁ ଚନ୍ଦନ ଲେପ ଦେଲେ ମଧ୍ୟ ମତ୍ସ୍ୟର ଉତ୍କଟ ଗନ୍ଧ ଯୋଜନ ଯୋଜନ ପର୍ଯ୍ୟନ୍ତ ଜନ ଜୀବନକୁ ଅସ୍ତ ବ୍ୟସ୍ତ କରି ପକାଏ । ଏଥି ସକାଶେ ଉପଯୁକ୍ତ ପାସ ନପାଇ ମୋର ପିତା ଏହି ସଙ୍ଗମ ସ୍ଥଳରେ ପାର ଉତାର କରିବା କାର୍ଯ୍ୟ ପାଇଁ ଯୁକ୍ତିଯୁକ୍ତ ଭାବିଲେ । ତାଙ୍କର ଧାରଣା ଥିଲି ଗଙ୍ଗ-କୋଇଲର ଉର୍ମିମାଳାର ଜଳ କଣା ସିକ୍ତ ମଳୟ ପବନର ସ୍ପର୍ଶରେ ମୋ ଦେହର ଆମିଷ ଗନ୍ଧ ଆପେ ଆପେ ଅପସରି ଯିବ । ମତ୍ସ୍ୟ ଗନ୍ଧାର ଏହି ଦୁର୍ଗନ୍ଧ ଯୁକ୍ତ ଶରୀର ଆର୍ଯ୍ୟ-ମୁନିଙ୍କ ପଦରେ କପରି ଅର୍ପଣ କରି ପ୍ରବଞ୍ଚନା କରିବ ?

ଆର୍ଯ୍ୟମୁନି ସାମ ବେଦର ଗୋଟିଏ ମନ୍ତ୍ର ଆବୃତ୍ତି କରି ଚାଲିଥାନ୍ତି—

"ସମସ୍ୟ ମନ୍ୟବେ ବିଶୋ
ବିଶ୍ୱା ନମନ୍ତ କୃଷ୍ଟୟଃ ।
ସମୁଦ୍ରାୟେବ ସିନ୍ଧବଃ ।"

(ଅର୍ଥାତ-ନଦୀ ସମୁଦ୍ର ଅଭି ମୁଖରେ ପ୍ରବାହିତ ହୋଇ ସେଠାରେ ଲୀନ ହୁଏ । ସମୁଦ୍ରର ପ୍ରଶାନ୍ତ ଦେହରେ ବିଶ୍ରାନ୍ତି ଲାଭ କରିବା ନଦୀର ସ୍ୱଭାବ । ନିଜର ସମ୍ପତ୍ତି ରୂପକ ପ୍ରତ୍ୟେକ ଜଳ ବିନ୍ଦୁକୁ ସମୁଦ୍ରରେ ସମର୍ପଣ କରିଦେବା ତାହାର ଧର୍ମ ।

ମହାମୁନି ମନେ ମନେ ଉପଲବ୍ଧି କଲେ ନଦୀ ଯେପରି ତାର ପ୍ରତ୍ୟେକ ଜଳ ବିନ୍ଦୁକୁ ସମୁଦ୍ରରେ ସମର୍ପଣ କରି ସେଥିରେ ଲୀନ ହୋଇଯାଏ । ସେହିପରି ମତ୍ସ୍ୟଗନ୍ଧା ତାର ସମସ୍ତ ସମ୍ପତ୍ତିକୁ ନିବେଦିତ କରି ସାରିଛି ।

ପରାଶର ମୁନି ସସ୍ମିତ ବଦନରେ ଆଶୀର୍ବାଦ କରି କହିଲେ "ମତ୍ସ୍ୟଗନ୍ଧା ତୋର ଶରୀରରୁ ମତ୍ସ୍ୟଗନ୍ଧ ଦୂର ହୋଇ ଯୋଜନ ପର୍ଯ୍ୟନ୍ତ ସୁଗନ୍ଧରେ ପରିପୂର୍ଣ୍ଣ ହେବ । ସେହି ମୁହୂର୍ତ୍ତରୁ ତୋର ନାମ ମତ୍ସ୍ୟଗନ୍ଧା ପରିବର୍ତ୍ତେ ହେବ 'ଯୋଜନଗନ୍ଧା' "ସ୍ତ୍ରୀ ରତ୍ନ ଦୁଃଷ୍କୁଳାଦପି" ଅର୍ଥାତ୍ ତୁ ଧୀବର କନ୍ୟା ହୋଇଥିବାରୁ କିନ୍ତୁ ଅବିବାହିତା କନ୍ୟାର କୌଣସି ଜାତି ନାହିଁ । ସେ କନ୍ୟାରତ୍ନା ତାର ଜାତି ନିର୍ଭର କରେ ସ୍ୱାମୀର ପରିଚୟରେ । ମତ୍ସ୍ୟଗନ୍ଧା ତୁ ଯେଉଁ ମୁହୂର୍ତ୍ତରୁ ମୋ ସଙ୍ଗେ ଯୁକ୍ତ ହେବୁ ସେଇ ମୁହୂର୍ତ୍ତରୁ ତୋର ପରିଚୟ ହେବ ବ୍ରାହ୍ମଣୀ ରୂପରେ ।"

"ନଶ୍ଚଳନ୍ତି ଖଳୁ ବାକ୍ୟଂ ସଜ୍ଜନାନାଂ କଦାଚନ" ଆର୍ଯ୍ୟମୁନିଙ୍କ ବାକ୍ୟ ଅକାଟ୍ୟ । ପରାଶରଙ୍କର ଅସୀମ ଦୟାରୁ ତାଙ୍କ ଶରୀରରୁ ପଦ୍ମର ସୌରଭ ବିଚ୍ଛୁରିତ ହେବାକୁ ଲାଗିଲା । ସେହି ମୁହୂର୍ତ୍ତରୁ ମତ୍ସ୍ୟଗନ୍ଧା ଯୋଜନ ଗନ୍ଧାରେ ପରିଣତ ହେଲେ । ଯୋଜନ ଗନ୍ଧାଙ୍କର ପଦ୍ମ ରାଗର ସୌରଭରେ ମଧୁମତ୍ତ ଭ୍ରମର ଓ ମଧୁ ମକ୍ଷିକାମାନେ ଏଣେ ତେଣେ ଘୂରି ବୁଲିଲେ । ମହର୍ଷିଙ୍କର ଏହି ଅଲୌକିକ ଶକ୍ତିରେ ଯୋଜନଗନ୍ଧା ବିମୁଗ୍ଧ ନୟନରେ ଜିଜ୍ଞାସା କଲେ, "ପ୍ରଭୋ ସ୍ତ୍ରୀ ପୁରୁଷଙ୍କର ମିଳନ ହୋଇଥାଏ କୌଣସି ନିଭୃତ ସ୍ଥାନରେ ଶଙ୍ଖ କୋଇଲିର ଦୁଇ ଉପକୂଳ ବର୍ତ୍ତମାନ ଜନାକୀର୍ଣ୍ଣ । ତେଣୁ ଏହି ସ୍ଥାନ ଉତ୍କୃଷ୍ଟ ନୁହେଁ ।"

ପରାଶର ମୁନି ଆହତ ସର୍ପପରି ଗର୍ଜନ କରି କହିଲେ, ତୁମେ ମୋତେ ଶାସ୍ତ୍ର ଶିକ୍ଷା ଦେବାର ସ୍ପର୍ଦ୍ଧା କରୁଛ । ଆର୍ଯ୍ୟମୁନି ଅଥର୍ବ ବେଦରୁ ଗୋଟିଏ ଶ୍ଳୋକ ଆବୃତ୍ତି କଲେ ।

( ୩ )

"ଯସ୍ତିଷ୍ଠତି ଚ ଚରତି ଯଶ୍ଚ ବଞ୍ଚତି
ଯୋନିଲାୟଂ ଚରତି ଯଃ ପ୍ରତଙ୍କମ୍
ଦ୍ୱୌ ସନିଷଦ୍ୟ ଯନ୍ମନ୍ତ୍ରୟେତେ ।
ରାଜା ତ ଦେବ ବରୁଣ ସ୍ତୃତୀୟଃ ।"

"ପାପ କର୍ମ ବା ଷଡ଼ଯନ୍ତ୍ର ପାଇଁ ଦୁଇ ଜଣ ବ୍ୟକ୍ତି ନିର୍ଜନ ସ୍ଥାନରେ ପହଞ୍ଚିବା ପୂର୍ବରୁ ବରୁଣ ଭଗବାନ ସେଠାରେ ଉପସ୍ଥିତ ଥାନ୍ତି । ଯାହା ଆମ୍ଭ-

ମାନଙ୍କ ପାଇଁ ଗୁପ୍ତ ତାହା ତାଙ୍କ ପାଇଁ ପ୍ରତ୍ୟକ୍ଷ, ମନୁଷ୍ୟ ଯେଉଁ ମୁହୂର୍ତ୍ତରେ ଏହାର ଉପଲବ୍‌ଧି କରେ, ସେହି ମୁହୂର୍ତ୍ତରୁ ହିଁ ସେ ପୁଣ୍ୟାତ୍ମା ପାଲଟି ଯାଏ ।"

"ପାପ କରିବା ପାଇଁ ଯେତିକ ଭୟ ହୁଏ । ପାପ କରୁଥିବାବେଳେ ଧରା ପଡ଼ି ଯିବା ପାଇଁ ତତୋଽଧିକ ଭୟ ହୁଏ । ପାପକୁ ଡରୁଥିବା ଲୋକେ ସଂସାରରେ ଅଳ୍ପ ସଂଖ୍ୟକ । ଅନେକ ଲୋକ ଜାଣି ଓ କର୍ତ୍ତବ୍ୟକୁ ଭୁଲି ପାପାଚରଣ କରନ୍ତି । ପାପୀ ଲୋକ ନିର୍ଜନ ସ୍ଥାନ ଖୋଜେ । ସେ ଚାହେଁ ଯେ ତାହାର ପାପ କାର୍ଯ୍ୟକୁ କେହି ନଦେଖୁ । ପାପର ଅଭ୍ୟାସ ଦୂର କରିବା ନିମନ୍ତେ ପାପୀ ବୋଲି ନିଜକୁ କେହି ନ ଜାଣନ୍ତୁ, ସେଥିପାଇଁ ଅନେକ ଚେଷ୍ଟା କରନ୍ତି । ବେଦ ମନ୍ତ୍ରରେ କୁହାଯାଇଛି ଗୁପ୍ତ ଭାବରେ କୌଣସି କାର୍ଯ୍ୟ କରୁଛି ବୋଲି ବିଚାରିବା ଅର୍ଥ ନିଜକୁ ନିଜେ ଠକିବା । ସର୍ବଦ୍ରଷ୍ଟା ଓ ସର୍ବ ବ୍ୟାପକ ପ୍ରଭୁଙ୍କ କୌଣସି କର୍ମ ଲୁଚାଇ ରଖିବା ଅସମ୍ଭବ । ଅନ୍ୟକୁ ପଦଟିଏ ନକହି ଆମ ମନରେ ଆମେ ଯାହା ବିଚାର କରୁ ତାହା ମଧ୍ୟ ସେ ଜାଣନ୍ତି । ପାପୀ ବିକାର ଗ୍ରସ୍ତ ହୋଇ ପ୍ରଭୁଙ୍କୁ ଦର୍ଶନ କରିପାରେ ନାହିଁ । ପରନ୍ତୁ ତାହାର ସମସ୍ତ ବିଚାର ଓ କର୍ମ ପ୍ରଭୁଙ୍କ ଦ୍ୱାରା ପରିଦୃଷ୍ଟ ହୁଏ । ଯୋଜନ ଗନ୍ଧା ଆମେ ଏଠାରେ କଣ ପାପ କର୍ମ କରୁ ନାହୁଁ । ବଂଶ ରକ୍ଷା ପାଇଁ ତୁ ହିଁ ଉପଯୁକ୍ତ ଆଧାର ଏବଂ ତୋର ମତ୍ସ୍ୟଗନ୍ଧ ପାଇଁ ତୋତେ କୌଣସି ପ୍ରକାର ଏ ପର୍ଯ୍ୟନ୍ତ ନମିଳିବା ମଧ୍ୟ ବାଧ୍ୟ ନୁହେଁ ।"

ଧୀରେ ଧୀରେ ଅବନତ ବଦନକୁ ଉପରକୁ ଉଠାଇ କୈବର୍ତ୍ତ କନ୍ୟା ଶଙ୍କାଗ୍ରସ୍ତ ମନରେ କହିଲେ । "ପ୍ରଭୋ, ନାରୀ ମୁଁ, ଲଜ୍ୟା ମୋର ଭୂଷଣ । 'ସର୍ଯ୍ୟାଲୋକରେ ମିଳନ ଜାତ ସନ୍ତାନ ସ୍ୱଳ୍ପାୟୁ । କୁତ୍ସିତ କଦାକାର ହେବ' ମୁଁ ପିତାଙ୍କ ମୁଖରୁ ଶୁଣିଛି । କାମ ଭାବ ମନରେ ଉନ୍ମାଦନା ସୃଷ୍ଟି ନକଲେ ମିଳନ ମଧୁମୟ ହୋଇ ପାରେନା । ଏଥି ସକାଶେ ଆବଶ୍ୟକ ସୁସଜ୍ଜିତ କକ୍ଷ ଏବଂ ଚନ୍ଦ୍ର ସମୟ ହିଁ ପ୍ରଶସ୍ତ । ଆପଣ ସର୍ବଜ୍ଞ । ଏହି ଅନୁଚିତ କଥାର ବାଚାଳି ନିବେଦନକୁ ଆପଣ କ୍ଷମା କରିବେ । ମୁଁ ଏହା ପରମ କର୍ତ୍ତବ୍ୟ ବୋଲି ଭାବି ମୁଁ ଏହି ନିବେଦନ କରିଛି । ଏଥର ଆପଣ ଆଦେଶ ଦିଅନ୍ତୁ ।"

ମହାମୁନି ପରାଶର ମତ୍ସ୍ୟଗନ୍ଧାର ଆର୍ଯ୍ୟ ନିଷ୍ଠାରେ ବିହ୍ୱଳିତ ହୋଇ କହିଲେ, "ମତ୍ସ୍ୟଗନ୍ଧା ! କୈବର୍ତ୍ତ କନ୍ୟା ହୋଇ ଶାସ୍ତ୍ର ଅନଭିଜ୍ଞା ଥାଇ ମଧ୍ୟ ତୁ

ଯେଉଁ ଆର୍ଯ୍ୟ ନିଷ୍ଠାରେ ନିର୍ଭୀକ ମନରେ ସତ୍ତ୍ୱ ଓ ମହତ୍ତ୍ୱ କଥା ଶୁଣାଇ ସତ୍ୟ ନିଷ୍ଠାର ପରିଚୟ ଦେଲୁ, ତେଣୁ ତୋର ନାମ ଆଜିଠାରୁ ହେବ "ସତ୍ୟବତୀ"। ତୋର ସମସ୍ତ ନିବେଦନ ଗ୍ରହଣୀୟ । ଆର୍ଯ୍ୟ ଋଷିର ଆର୍ଯ୍ୟୋଚିତ ବାକ୍ୟ ଉଚ୍ଚାରଣ କରୁଥିବା କନ୍ୟା ସମକ୍ଷରେ ରତି କାଙ୍କ୍ଷୀ ହେବା ହିଁ ଏତ ବିଧି ନିର୍ଦ୍ଦେଶ । ତେଣୁ ସତ୍ୟବତୀ, ମୁଁ ତୋ ଉପରେ ଅତ୍ୟନ୍ତ ପ୍ରୀତ । ତୋ ଇଚ୍ଛା ଅନୁଯାୟୀ ଏହି ନୌକା ଆମର ମିଳନରେ ନିଶ୍ଚଳ ରହିବ କାମ କ୍ରୀଡ଼ାର ଶେଷ ପର୍ଯ୍ୟନ୍ତ । ଏହି ନୌକା ପରିଣତ ହେବ ନାନାବିଧପୁଷ୍ପ ଶୋଭିତ ଏକ ଅପୂର୍ବ ମନୋରମ କକ୍ଷରେ । ବାମ ନାସାରେ ଶ୍ୱାସ ପ୍ରଶ୍ୱାସ ପ୍ରବାହିତ ହୋଇ ଚନ୍ଦ୍ର ସମସ୍ତ ଉପସ୍ଥିତ ହେବ । ଏହି ଶଙ୍ଖ କୋଇଲିର ସଙ୍ଗମ ସ୍ଥଳରେ ଗୁପ୍ତ ସରସ୍ୱତୀ ପ୍ରବାହିତ ହୋଇ ପବିତ୍ର ତ୍ରିବେଣୀରେ ପରିଣତ ହେବ । ଏହି ପବିତ୍ର ସଙ୍ଗମ ଭୂଖଣ୍ଡ ପ୍ରବଳ ଘନ କୁହେଳିକାରେ ଆଚ୍ଛାଦିତ ହୋଇ ଦିବାଲୋକ ଅଦୃଶ୍ୟ ହେବ ଏବଂ ଏହି ନୌକାଟି ଲୋକ ଲୋଚନର ଅଗୋଚରରେ ରହିବ । ଘନ କୁହେଳିକାରେ ଆଚ୍ଛାଦିତ ହେଲେ ଶଙ୍ଖ କୋଇଲିର ଦୁଇ ଉପକୂଳରେ ଆଉ କେହି ରହିବେ ନାହିଁ । ଆମର ମିଳନ ଶେଷ ନହେବା ପର୍ଯ୍ୟନ୍ତ କୌଣସି ପ୍ରାଣୀ ମଧ୍ୟ ଚଳାଚଳ କରି ପାରିବେ ନାହିଁ । ସଙ୍ଗମ ସ୍ଥଳର ଗଣ୍ଡି ମଧ୍ୟରେ ବସନ୍ତ ପ୍ରବାହ ଅବ୍ୟାହତ ରହିବ । କୋକିଳ କୂଜନ ଓ ମଧୁ ମକ୍ଷିକାର ଗୁଞ୍ଜରଣରେ ଏହି ପବିତ୍ର ସ୍ଥଳ ମୁଖରିତ ହେବ ।

ମହାମୁନିଙ୍କର ସାଧନାର ସିଦ୍ଧି ଅନେକ । ମୁନିଙ୍କର ବାକ୍ୟ ନିଃସୃତି ସହିତେ ସଙ୍ଗେ ସଙ୍ଗେ ସମସ୍ତ କାର୍ଯ୍ୟ ସଂଗଠିତ ହେଲା । ଘନ ତମସାଚ୍ଛନ୍ନ ରାତ୍ରି କୋଜାଗରୀ ପୂର୍ଣ୍ଣିମାର ଜ୍ୟୋତ୍ସ୍ନା ରଜନୀ ପରି ଅନୁମିତ ହେଉଥିଲା । ଘନ କୁହେଳିକା ପୂର୍ଣ୍ଣ ନୌକାରେ ଗୋଟିଏ ମଞ୍ଚ ସତ୍ୟବତୀର ସୁରମ୍ୟ କେଳି ମନ୍ଦିର ରୂପେ ଶୋଭା ପାଉଥାଏ । ସତେ ଯେପରି ଭୁବନ ମୋହିନୀ ସତ୍ୟବତୀ ନୟନା-ଭିରାମ ଭଙ୍ଗୀରେ କବରୀରେ ରଜନୀଗନ୍ଧାର ଫୁଲଟି ଖୋସିବାର ପରିକଳ୍ପନା ବହୁ ପୂର୍ବରୁ କରିସାରିଥିଲା । ମୃଦୁ ମଳୟର ହିଲ୍ଲୋଳରେ ସତ୍ୟବତୀର ନୀଳାଂଶୁକ ତଳେ ନଗ୍ନ ଦେହର କି ସେ ରୂପଶ୍ରୀ । କୁହେଳିକା ପୂର୍ଣ୍ଣ ନୌକାସ୍ଥିତ ସୁସଜ୍ଜିତ ପୁରରେ ରତି କାଙ୍କ୍ଷାଭିଳାଷୀ ପ୍ରକୃତି ଓ ପୁରୁଷ କ୍ଷୁଧିତ କାମଲାଳସାର ପରିପୂର୍ଣ୍ଣତା ଦିଗରେ ଆଗେଇବାକୁ ଲାଗିଲେ । ନୌକାଟି ସ୍ଥିରରହି ଶଙ୍ଖ ଓ କୋଇଲିର ମଧୁର ମିଳନର ସୀମାରେଖା ଉପରେ ପ୍ରତ୍ୟାବର୍ତ୍ତନ ସ୍ରୋତକୁ ଅପେକ୍ଷା କରିଥାଏ ।

ଅଶାନ୍ତ ଗାଙ୍ଗେୟ ବକ୍ଷ ଉପରେ ଧୂମ ଏବଂ ଭୂଲ ଅନ୍ଧାରର ସେ ସୃଷ୍ଟିର ଅବସାନ ଘଟିଲା । କାମ କ୍ରୀଡ଼ାରେ ପରିତୃପ୍ତ ପରାଶର ଆତ୍ମସ୍ଥ ହୋଇ ସତ୍ୟବତୀଙ୍କୁ ପ୍ରଶ୍ନ କଲେ ? "ପ୍ରିୟେ ! ମୋର ଔରସରୁ ତୁମ ଗର୍ଭରେ ଯେଉଁ ସନ୍ତାନ ଜନ୍ମନେବ ସେ ହେବ ମନ୍ତ୍ରଦ୍ରଷ୍ଟା ଓ ମହାଜ୍ଞାନୀ, ତୁମେ ତାକୁ ସାମାନ୍ୟ ମନେକରି ପରିତ୍ୟାଗ କରିବ ନାହିଁ । ତୁମେ ଉଚିତ୍ ଚିନ୍ତାନେବ, ମୁଁ ମୋର ତପସ୍ୟା କରିବାକୁ ଚାଲିଲି ।"

ସତ୍ୟବତୀ ବେଦନା ଭରାକଣ୍ଠରେ କହିଲେ, "ପ୍ରଭୋ ଏହି ନୌକାର ଆହୁଲା ବର୍ତ୍ତମାନ ତୁମର ହସ୍ତଗତ । ବିନା ଆହୁଲାରେ ଏହି ନୌକାଟି ଭବ-ପାରାବାରରେ ଯାଇଁ ବୁଡ଼ିମାର ହୋଇ ଯିବ । ତୁମ ଔରସ ସନ୍ତାନର ଚିନ୍ତା ତୁମେ ବୁଝ । ତୁମେ ସର୍ବଜ୍ଞ ଓ ମହାମୁନି, ମୁଁ ସମାଜ ଚକ୍ଷୁରେ ଏକ ଅନୂଢ଼ା କନ୍ୟା । ଏହି ଅନୂଢ଼ା କନ୍ୟାଠାରୁ ସନ୍ତାନ ପ୍ରସବ ସମାଜ ଚକ୍ଷୁରେ ହେବ ଦୁର୍ବିସହ । ଜନ୍ମିତ ସନ୍ତାନ ହେବ ଜାରଜ ସନ୍ତାନ । ତାକୁ ଜନ୍ମ ଦେଇ ଉପଯୁକ୍ତ ଚିନ୍ତା ନେବା ଦୂରର ଆଉ; ବର୍ତ୍ତମାନ ମୋର ଏହି ଗର୍ଭାବସ୍ଥା ଦେଖିଲେ ଜନ ସମାଜ ଥୁଥୁକାର କରିବେ । ସମାଜ ଦୃଷ୍ଟିରେ ମୁଁ ହେବି ପତିତା । ଏହି ସତ୍ୟ ଘଟଣା ନଜାଣି ମୋର ପିତା ମୋତେ ଗୃହରୁ ତଡ଼ିଦେବେ । ସମାଜରୁ ମୋର ପିତାଙ୍କୁ ମଧ୍ୟ ବାସନ୍ଦ କରିବେ । ମୋତେ ଏହି ଦୁର୍ବିସହ ଜୀବନ ଧାରଣ କରିବା ହୁଏତ ଆଉ ସମ୍ଭବ ହୋଇ ନପାରେ । ହେ ମୁନି ଶ୍ରେଷ୍ଠ ! ମୋର ଏତିକି ମିନତି ଗ୍ରହଣ କରି ଆପଣଙ୍କର ସହାନୁଗାମୀ ହେବା ପାଇଁ ଅନୁମତି ପ୍ରଦାନ କରନ୍ତୁ ପ୍ରଭୋ ।"

ଅଦ୍ୱିତୀୟମୁନି ପରାଶର ଉଦାସ ମନରେ କହିଲେ, "ପ୍ରିୟେ ! ସତ୍ୟବତୀ ! ତୁମେ ଯାଇଁ ପାରିବ ନାହିଁ । ତୁମେ ଆଗେଇ ଚାଲ । ବୈଦିକରେ ବ୍ରାହ୍ମଣର ଏହି ଶ୍ଳୋକଟି ଉଚ୍ଚାରଣ କରି କରି କହିଥାନ୍ତି:—

"ନାନା ଶ୍ରାନ୍ତାୟ, ଶ୍ରୀରସ୍ତି ଇତି ରୋହିତ ଶୁଶ୍ରୁମ,
ପାପୋ ନୃଷଦ୍ବରୋ ଜନଃ
ଇନ୍ଦ୍ର ଇଚ୍ଚରତଃ ସଖା
ଚରୈବେତି ଚରୈବେତି ।"

ଅର୍ଥାତ୍- ଚାଲ ଚାଲ ଯେ ଶାନ୍ତ ତାର ଶ୍ରୀର ଅନ୍ତ କଦାପି ହୁଏ ନାହିଁ । ମୁଁ ବେଦ୍ପରତ ଏହି କଥା ବହୁ ଜନରୁ ଶୁଣିଛି । ଯେ ଚାଲେ ଦେବତା ଇନ୍ଦ୍ର ମଧ୍ୟ

ତାର ସାଙ୍ଗ ହୋଇ ଚାଲନ୍ତ । ଯେ ଚାଲିବାକୁ ଚାହେଁ ନାହିଁ ସେ ଶ୍ରେଷ୍ଠ ପୁରୁଷ ହେଲେ ମଧ୍ୟ ମୃତ ହୋଇଯାଏ । ଅତଏବ ଆଗେଇ ଚାଲ, ଆଗେଇ ଚାଲ । ) "ପ୍ରିୟେ !ଏହା ବିଧି ନିର୍ଦ୍ଦେଶ । ମୋର ଔରସର ସନ୍ତାନ ପ୍ରତି ପାଳନ କରିବା ଦାୟିତ୍ୱ ତୁମର । ଉପଯୁକ୍ତ ଆଧାରରେ ସନ୍ତାନ ଜାତ କରାଇ ପରମ ଲଗ୍ନରେ ତପସ୍ୟା କରିଯିବାକୁ ମୋର ଲକ୍ଷ୍ୟ । ତପସ୍ୟା ସମୟ ଅତିକ୍ରାନ୍ତ ହୋଇଯିବ କାଳ ବିଳମ୍ବ ନକରି ମୋତେ ବିଦାୟ ଦିଅ । ମୁଁ ଦିବ୍ୟ ଚକ୍ଷୁରେ ଦେଖି ପାରୁଛି ତୁମର ପିତା ଏହି ସମସ୍ତ ବୃତ୍ତାନ୍ତ ଜାଣିଲ ପରେ, ମୋର ଔରସ ସନ୍ତାନର ଯତ୍ନ ନେବେ ।"

ସତ୍ୟବତୀ ଉଚ୍ଚ ସ୍ୱରରେ କ୍ରନ୍ଦନ କରିବାରେ ଲାଗିଲେ । କ୍ରନ୍ଦନରତ କଣ୍ଠରେ କହିବାକୁ ଲାଗିଲେ, " ବାଳ୍ୟ ଜୀବନରେ କନ୍ୟା ମାତାଶ୍ରିତ ପତି ଗୃହକୁ ଯିବା ପର୍ଯ୍ୟନ୍ତ ପିତାଶ୍ରିତ କିନ୍ତୁ ଏହି ଅବସ୍ଥାରେ ମୁଁ ଆପଣଙ୍କ ଆଶ୍ରିତ ଏବଂ ଆପଣଙ୍କର ସନ୍ତାନ ମୋ ଗର୍ଭରେ । ମୁଁ ବେଦ ଅବେଦ କିଛି ଜାଣେନା । ମୋତେ ଆପଣଙ୍କର ସହଗାମିନୀ ହେବା ପାଇଁ ଅନୁମତି ଦିଅନ୍ତୁ ନଚେତ୍ ଆପଣ ମୋତେ ପିତାଙ୍କ ସମ୍ମୁଖରେ ଶାସ୍ତ୍ର ସମ୍ମତ ଭାବରେ ବିବାହ କରି ସମାଜରେ ପ୍ରତିଷ୍ଠା କରି ଯାଆନ୍ତୁ ।"

ଆର୍ଯ୍ୟମୁନି ଏହି ବିଷମ ସମସ୍ୟାର ସମାଧାନ କରିବାରେ ତାଙ୍କର ମଥା ଭାରାକ୍ରାନ୍ତ ହୋଇଗଲା । ତାଙ୍କର ଧାରଣା ଥିଲା ଉପଯୁକ୍ତ ଆଧାରରେ ସନ୍ତାନ ଜାତ କରାଇ ଉପଯୁକ୍ତ ସମୟରେ ତପସ୍ୟା ଆଚରଣ କରି ସେହି ସ୍ଥାନରୁ ପ୍ରତ୍ୟାବର୍ତ୍ତନ କରିବା ତାଙ୍କର ଉଦ୍ଦେଶ୍ୟ । କିନ୍ତୁ··· ଏ କି ମହାବିପଦ ? ମୁନି ଋଷିଙ୍କର ପୁଣି କନ୍ୟାର ମାୟା ? କୈବର୍ତ୍ତରାଜାଙ୍କ ଠାରୁ କନ୍ୟା ଗ୍ରହଣ କରି ସମାଜରେ ପ୍ରତିଷ୍ଠା କରାଇବା କଣ ମୁନି ଋଷିଙ୍କ ଠାରେ ସମ୍ଭବ ? କାମିନୀର ମୋହମାୟାଚ୍ଛନ୍ନ କରିବା ମଧ୍ୟ ଅତୀବ କଠିନ । କୈବର୍ତ୍ତ କନ୍ୟା ସତ୍ୟବତୀର ଯେଉଁ ଅକାଟ୍ୟ ଯୁକ୍ତି ତାହା ଉପେକ୍ଷଣୀୟ ନୁହେଁ । ସୁତରାଂ··· ଉପାୟ ?

ମୁନି ଶ୍ରେଷ୍ଠ ପରାଶର ଧ୍ୟାନ ମଗ୍ନ ହେଲେ । ସମୟ ଗଡ଼ି ଚାଲିଥାଏ । ମହାଚେତା ଋଷିଙ୍କର ଚେତା ଚୈତନ୍ୟ ଶୂନ୍ୟ ହେଲା ପରି ଜଣା ପଡ଼ୁଥାଏ । ସତ୍ୟବତୀଙ୍କର ଅସ୍ଥିର ଚିତ୍ତ ସେତେବେଳକୁ ସ୍ଥିର ହୋଇ ଯାଇଥାଏ । ଶାନ୍ତ କୋଇଲର ଜଳ ଯେପରି ସ୍ଥିର ଓ ସ୍ଥାଣୁ ପାଲଟି ଥାଏ । ଘନ କୁହୁଡ଼ିକା କେଉଁଆଡ଼େ ଉଭେଇ ଯାଇଥାଏ । ମହାମୁନି ପୁଣି ଆତ୍ମସ୍ଥ ହେଲେ । ସେ

କହିଲେ "ପ୍ରିୟେ ! ମୋର ବରରେ ତୁମକୁ ଦଶ ମାସର ଗର୍ଭକଷ୍ଟ ସହିବାକୁ ହେବନାହିଁ," ସଙ୍ଗେ ସଙ୍ଗେ ତୁମ ଗର୍ଭରୁ ଏହି ଶଙ୍ଖ କୋଇଲାର ପବିତ୍ର ସଙ୍ଗମ ସ୍ଥଳର ଭୂଖଣ୍ଡରେ ଯେଉଁ ସନ୍ତାନ ଜନ୍ମନେବ ସେ ସଙ୍ଗେ ସଙ୍ଗେ ଯୁବକରେ ପରିଣତ ହେବ ଏବଂ ତୁମର କୁମାରିତ୍ୱ ଅକ୍ଷୁର୍ଣ୍ଣ ରହିବ । ସମଗ୍ର ବିଶ୍ୱ ତୁମ ସନ୍ତାନର ପ୍ରଶଂସା କରିବେ । ତୁମେ ହେବ ଏହି ବିଶ୍ୱର ମହାଜନନୀ ।"

ମୁନିବାକ୍ୟ ଅନ୍ୟଥା ନୁହେଁ । ଶଙ୍ଖ ଓ କୋଇଲ ନଦୀ ଦ୍ୱୟର ମଧ୍ୟସ୍ଥ ଭୂଖଣ୍ଡରେ ଜନ୍ମନେଲେ ମତ୍ସ୍ୟଗନ୍ଧା ଗର୍ଭସ୍ଥ ସନ୍ତାନ । ଜନ୍ମିତ ଅପୂର୍ବ ସନ୍ତାନ ସଙ୍ଗେ ସଙ୍ଗେ ଯୁବକରେ ପରିଣତ ହେଲେ । ତାଙ୍କର ସୁସଂଗଠିତ କୃଷ୍ଣବର୍ଣ୍ଣ ତନୁ, ଆଜାନୁ ଲମ୍ବିତ ବାହୁ, ପିଙ୍ଗଳଜଟା, ବଭ୍ରୁଳ ପକ୍ଷ୍ମ, ଫୁଲ୍ଲାର ବିନ୍ଦାବୃତ ପଦ୍ମ ନେତ୍ର ଓ ଲୋମଶ ଶରୀର ପ୍ରଜ୍ଞା, ପାରମିତା ଓ ସଂଭ୍ରମର ଜ୍ୟୋତନା ଆଣୁଥାଏ । ଋଷିଙ୍କର ଦିବ୍ୟ ଔରସରୁ ଜନ୍ମିତ ଯୁବକ ପୁତ୍ର ପିତା ଓ ମାତା ପଦରେ ପ୍ରଣାମ କରି ତପସ୍ୟା କରିବାକୁ ଅନୁମତି ଭିକ୍ଷା କଲେ ।

ଆର୍ଯ୍ୟମୁନି ପରାଶର ଯୁବକ ପୁତ୍ରକୁ ଆଶୀର୍ବାଦ କରି ଯଜୁର୍ବେଦର ଶେଷ ମନ୍ତ୍ରଟି ଆବୃତ୍ତିକଲେ--

"ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍ ।
ଯୋଽସାବାଦିତ୍ୟେ ପୁରୁଷଃ ମୋଽସାବହମ୍ ।
ଓମ୍ ଓମ୍ ଓମ୍ ଖଂ ବ୍ରହ୍ମ ।"

( ଅଧ୍ୟାୟ ୪୦ ମନ୍ତ୍ର ୧୭ )

( ଅର୍ଥାତ୍- କର୍ମନିଷ୍ଠ ମାନବ ପୁତ୍ରକୁ ତାହାଙ୍କର ଶେଷ ଉପଦେଶ— " ପୁତ୍ର ! ସାବଧାନ, ସ୍ୱର୍ଣ୍ଣ ଲୋଭରେ ସତ୍ୟକୁ ତ୍ୟାଗ କର ନାହିଁ ।" ପ୍ରଭୁ କହନ୍ତି "ହେ ମାନବ ପୁତ୍ର ! ହିରଣ୍ମୟ ସୂର୍ଯ୍ୟ ମଧ୍ୟରେ ମୁଁ ସତ୍ୟ ସ୍ୱରୂପ ହୋଇ ରହିଛି । ସୂର୍ଯ୍ୟ ପ୍ରଭାବରେ ମୁଗ୍ଧ ହୋଇ ମୋତେ ବିସ୍ମରଣ କରନାହିଁ । ମୁଁ ପ୍ରକୃତିକୁ ଧାରଣ କରେ । ମୋର ନିଜ ନାମ "ଓଁ" ମୁଁ ସର୍ବ ବ୍ୟାପକ ଓ ମହାନ ହିରଣ୍ମୟୀ ପ୍ରକୃତିର ଅନ୍ତରରେ ଥିବା ମୋର ସତ୍ୟ ସ୍ୱରୂପକୁ ଅନ୍ୱେଷଣ କର ।" )

ଋଷି ପୁତ୍ରର ଶରୀର କୃଷ୍ଣବର୍ଣ୍ଣ ଏବଂ ଦ୍ୱୀପ ମଧ୍ୟରେ ଜନ୍ମ, ତେଣୁ ନାମ ରଖିଲେ 'କୃଷ୍ଣଦ୍ୱୈପାୟନ' । କୃଷ୍ଣ ଦ୍ୱୈପାୟନଙ୍କୁ ସର୍ବ ଶାସ୍ତ୍ରରେ ଜ୍ଞାନ ପ୍ରାପ୍ତିର ଆଶୀର୍ବାଦ କରି ପରାଶର ମୁନି ତପସ୍ୟା ପଥରେ ଚାଲିଗଲେ ।

ସତ୍ୟବତୀ ନିର୍ନିମେଷ ନୟନରେ ଆର୍ଯ୍ୟମୁନିଙ୍କର ଚଲା ପଥକୁ ଚାହିଁ ରହିଥିଲେ ପରାଶର ମୁନି ଆଗକୁ ଆଗକୁ ଯାଇ ଦୃଷ୍ଟିର ଅନ୍ତରାଳକୁ ଚାଲିଗଲେ । କୃଷ୍ଣଦ୍ୱୈପାୟନ ମାତୃ ପାଦପଦ୍ମ ବନ୍ଦନା କରି କହିଲେ । " ମାତଃ ମୋତେ ଆଶୀର୍ବାଦ କର ଆପଙ୍କର ସ୍ମରଣ ମାତ୍ରେ ମୁଁ ଯେପରି ମାତାଙ୍କର ପାଦପଦ୍ମ ବନ୍ଦନା କରିପାରିବି ।" ମାତୃ ଆଶୀର୍ବାଦ ଗ୍ରହଣକରି ସେ ତାଙ୍କର ସାଧନ ମାର୍ଗରେ ଅଗ୍ରସର ହେଲେ ।

ମତ୍ସ୍ୟଗନ୍ଧା ପିତାଙ୍କୁ ପ୍ରଣିପାତ କରି ଆର୍ଯ୍ୟମୁନି ପରାଶରଙ୍କର ଆଶୀର୍ବାଦ ଲାଭ କରିଥିବା ବିଷୟ ବର୍ଣ୍ଣନା କଲେ । ସେ ଋଷିଙ୍କ ଆଶୀର୍ବାଦରୁ ମତ୍ସ୍ୟଗନ୍ଧାରୁ କିପରି "ଯୋଜନଗନ୍ଧା" ହେଲେ ଏବଂ ଯୋଜନଗନ୍ଧାରୁ ସତ୍ୟବାଦିନୀ ଗୁଣରୁ 'ସତ୍ୟବତୀ' ନାମ କରଣ କଥା କହିଲେ । ପରବର୍ତ୍ତୀ କାଳରେ ଏହି ସତ୍ୟବତୀ ମହାଭାରତ ଯୁଦ୍ଧରେ ମୁଖ୍ୟ ଯୋଦ୍ଧା ମାନଙ୍କର ଥିଲେ ପ୍ରପିତା ମହୀ ଏବଂ ମହାରାଜା ଶାନ୍ତନୁ ଙ୍କର ସହଧର୍ମିଣୀ ।

ଶଙ୍ଖ କୋଇଲୀର ସଙ୍ଗମ ସ୍ଥାନରୁ ଯେଉଁ ସ୍ରୋତ ଉଭୟ ନଦୀର ଜଳ ବହନ କରି ସମୁଦ୍ରରେ ମିଶିଛି ତାର ନାମ ଥିଲା ତପସ । ଆର୍ଯ୍ୟମୁନିଙ୍କର ଆଶୀର୍ବାଦରେ ଯେଉଁ ସମୟରେ କୈବର୍ତ୍ତ ନନ୍ଦିନୀ ମତ୍ସ୍ୟଗନ୍ଧା ମହର୍ଷିଙ୍କର ଔରସର ସନ୍ତାନ ଧାରଣ କରିଥିଲେ ଯେଉଁ ସମୟରେ ସେ ପରିଣତ ହୋଇଥିଲେ ଧୀବର କନ୍ୟାରୁ ବ୍ରାହ୍ମଣୀ ରୂପରେ । ସେହି ସମୟରୁ ତପସ୍ ନଦୀର ନାମ "ବ୍ରାହ୍ମଣୀ" ରୂପରେ ପରିଚିତ ।

କୃଷ୍ଣଦ୍ୱୈପାୟନ ଗଙ୍ଗା କୂଳେ କୂଳେ ଯାଇ ଶ୍ରୀନଗରଠାରୁ ୪୮ କିଲୋମିଟର ଦୂର ବ୍ୟାସିଠାରେ ତାଙ୍କର ସାଧନା ଆରମ୍ଭ କରିଥିଲେ । ସେଠାରେ କୃଷ୍ଣଦ୍ୱୈପାୟନ କଠୋର ତପସ୍ୟାରେ ମଗ୍ନ ହୋଇ ଜ୍ଞାନଲାଭ କରିଥିଲେ । ସେହିଲବ୍ଧ ଜ୍ଞାନଦ୍ୱାରା ବେଦକୁ ପୁନର୍ବିନ୍ୟାସ କରି ଜନ ସମାଜରେ ବେଦର ଅଭ୍ୟାସ ପଥ ଖୋଲି ଦେଇଥିବାରୁ କୃଷ୍ଣଦ୍ୱୈପାୟନ 'ବେଦବ୍ୟାସ' ରୂପେ ପରିଚିତ ହେଲେ । ତାଙ୍କର ସାଧନ କ୍ଷେତ୍ର 'ବ୍ୟାସି' ନାମରେ ପରିଚିତ ହେଲା । ଏହି ବ୍ୟାସି ଦେବ ପ୍ରୟାଗ ଠାରୁ ୩୨କି.ମି. ଦୂର । ଦେବ ପ୍ରୟାଗରେ ପ୍ରବଳ ସ୍ରୋତସ୍ୱିନୀ ଅଳକା ନନ୍ଦା ତର୍ଜନ ଗର୍ଜନ ବିହୀନ ହୋଇ, ଉନ୍ମାଦିନୀ ଭୀଷଣାକୃତି ଭାଗୀରଥି ସହିତ ସଙ୍ଗମ ସୃଷ୍ଟି କରିଛନ୍ତି । ଏହି ବିପୁଳ ଜଳରାଶି ଦେବ ପ୍ରୟାଗ ଠାରୁ 'ଗଙ୍ଗା' ନାମରେ

ମହୋଦଧି ମୁଖେ ଧାବମାନ । ବ୍ୟାସି ଠାରେ ପୁଣ୍ୟଶ୍ଳୋକ 'ବେଦବ୍ୟାସ'ଙ୍କର ପବିତ୍ର ଆଶ୍ରମକୁ ହଜାର ହଜାର ସଂଖ୍ୟାରେ ଧର୍ମ ପ୍ରାଣ ତୀର୍ଥଯାତ୍ରୀମାନେ ପୁଣ୍ୟ ଅର୍ଜ୍ଜନ କରିବାକୁ ଆସିଥାନ୍ତି ।

ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲା ରାଉରକେଲା ନିକଟସ୍ଥ ଶଙ୍ଖ ଓ କୋଇଲ ନଦୀର ପବିତ୍ର ସଙ୍ଗମ ସ୍ଥଳ 'ବେଦବ୍ୟାସ' ନାମରେ ପରିଚିତ ଏହି ସ୍ଥାନର ନାମ ଆର୍ଯ୍ୟଋଷି ପରାଶରଙ୍କର ଦିବ୍ୟ ପ୍ରଜ୍ଞାଜ୍ଞାନରୁ ସମ୍ଭୂତ ପୁତ୍ର ଦ୍ୱୈପାୟନ କୃଷ୍ଣଙ୍କର ନାମକୁ ସମ୍ମାନ ଓ ସମ୍ଭ୍ରମ ସହିତ ସ୍ମରଣ କରିବାପାଇଁ ରଖାଯାଇଛି ।

---

*ତରଙ୍ଗ- ବ୍ରାହ୍ମଣୀ, ପୃ: ୧୪୪ ପ୍ରାଚୀନ ଉତ୍କଳ- ଜଗବନ୍ଧୁ ସିଂହ-୨ୟ ଭାଗ



# ତୃତୀୟ ପରିଚ୍ଛେଦ

## ବେଦବ୍ୟାସ ଓ ଭୀଷ୍ମ

### ( କ )

ଗଙ୍ଗା ଓ କୋଇଲି ନଦୀ କୂଳରେ ଅବସ୍ଥିତ ଧୀବର ରାଜ 'ମହାତ୍ମା ଦାସ'ଙ୍କ ପ୍ରାସାଦ ଆଜି ମୁଖରିତ । ଗାଙ୍ଗେୟ ଦେବବ୍ରତଙ୍କ ଅଭ୍ୟର୍ଥନା ପାଇଁ କୈବର୍ତ୍ତ ପ୍ରାସାଦରେ ସେଦିନ ମହୋତ୍ସବର ଆୟୋଜନ ହୋଇପରି ଲାଗୁଥିଲା ।

ଗାଙ୍ଗେୟ ଦେବବ୍ରତ ଧୀବର ରାଜାଙ୍କ ନିକଟରେ ପ୍ରତିଜ୍ଞା କରିଥିଲେ, "ସତ୍ୟବତୀଙ୍କ ଗର୍ଭଜାତ ସନ୍ତାନ ହସ୍ତିନାପୁରର ସିଂହାସନ ଆରୋହଣ କରିବେ ମୋର କୌଣସି ସନ୍ତାନ ଯେପରି ସିଂହାସନ ଉପରେ ଦାବି ନ କରନ୍ତି, ସେଥିପାଇଁ ମୁଁ ଆଜୀବନ ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରିବି ।"

ଓଃ, କି ନିଷ୍ଠୁର ଏହି ପ୍ରତିଜ୍ଞା ! ଗାଙ୍ଗେୟ ଦେବବ୍ରତଙ୍କର ପ୍ରତିଜ୍ଞା ମେରୁ ସଦୃଶ ଅଟଳ । କୈବର୍ତ୍ତ ରାଜ ପ୍ରାସାଦ ଦେବବ୍ରତଙ୍କ ଜୟ ଗାନରେ ନିନାଦିତ । ଋଷିଗଣ ଦେବ ବ୍ରତଙ୍କ ଉପରେ ପୁଷ୍ପ ବୃଷ୍ଟି କରି ଗାଙ୍ଗେୟ ଦେବ ବ୍ରତଙ୍କ ନାମ ରଖିଥିଲେ 'ଭୀଷ୍ମ' ।

ଗଙ୍ଗାଙ୍କର ଅଷ୍ଟମ ଗର୍ଭ ସମ୍ଭୂତ ପୁତ୍ର ଭୀଷ୍ମଙ୍କର ଏ ପ୍ରତିଜ୍ଞା କାହିଁକି ? ମହାରାଜ ଶାନ୍ତନୁ କୋଇଲି ତଟଦେଶ ବନ ଉପବନରେ ତାଙ୍କର କାନ୍ତା ଗଙ୍ଗାଙ୍କୁ ଖୋଜି ବୁଲୁଥାନ୍ତି । ସେ ସଂସାର ଓ ରାଜ କାର୍ଯ୍ୟରେ ବୀତସ୍ପୃହ ହୋଇ ଯୁବରାଜ ଗାଙ୍ଗେୟ ଦେବବ୍ରତଙ୍କୁ ଶାସନ କାର୍ଯ୍ୟ ହସ୍ତାନ୍ତର କରି ଏହିପରି ଉଦାସୀନ ଭାବେ ବୁଲୁବୁଲୁ ଭେଟିଥିଲେ ଧୀବର କନ୍ୟା ଯୋଜନଗନ୍ଧା ସତ୍ୟବତୀଙ୍କୁ । ଆକୃତି ଓ ବିଳାସ ଭଙ୍ଗୀରେ ସେ ପାଇଥିଲେ ଗଙ୍ଗା ଏବଂ ସତ୍ୟବତୀଙ୍କ ମଧ୍ୟରେ ସାମଞ୍ଜସ୍ୟ । ମହାରାଜ ଶାନ୍ତନୁଙ୍କର

ସବାଙ୍କ ବିଦ୍ରୋହ ଉଠିଲା । ସେ ଭାବିବାକୁ ଲାଗିଲେ ସତ୍ୟବତୀ କିଏ ସେହି ଗଙ୍ଗା, ତାଙ୍କୁ ବିଭିନ୍ନ ରୂପରେ ଦେଖା ଦେଉଛନ୍ତି ? ତା ହେଲେ ସେ ପୁଣି କଣ ଗର୍ଭଜାତ ସନ୍ତାନ ଗୋଟିକ ପରେ ଗୋଟିଏ ଜାହ୍ନବୀ ଜଳରେ ଭସାଇ ଦେବ ? ନାନା···ହୋଇ ପାରେନା !

ସେତେବେଳେ ମଧୁର ବାକ୍ୟ ଶୁଣି, ରୂପ ମାଧୁରୀ ଓ ସୁଗନ୍ଧ ଯୁକ୍ତା ସତ୍ୟବତୀଙ୍କୁ ପାଇବା ପାଇଁ ପ୍ରବଳ ଆକାଂକ୍ଷା ଜନ୍ମିଲା । କିନ୍ତୁ ସତ୍ୟବତୀଙ୍କ ପିତା କୈବର୍ତ୍ତ ରାଜ ମହାତ୍ମା ଦାସଙ୍କର ଏକ ଦାରୁଣ ସର୍ତ୍ତ ! " ସତ୍ୟବତୀଙ୍କ ଗର୍ଭଜାତ ସନ୍ତାନ ହସ୍ତିନାପୁରର ସିଂହାସନ ଆରୋହଣ କରିବେ ।" କିନ୍ତୁ ସେଦିନ ମହାରାଜ ଶାନ୍ତନୁ ବିଷର୍ଣ୍ଣ ବଦନରେ ପ୍ରତ୍ୟାବର୍ତ୍ତନ କରିଥିଲେ କେବଳ ତାଡ଼ନାରେ— ଦେବୋପମ ଗାଙ୍ଗେୟ ଦେବବ୍ରତଙ୍କୁ ଉପେକ୍ଷା କରିବା ସମ୍ଭବ କି ?

ଗାଙ୍ଗେୟ ଦେବବ୍ରତ ପାତ୍ର ମନ୍ତ୍ରୀ ଓ ଅମାତ୍ୟଙ୍କ ନିକଟରୁ ସମସ୍ତ ତଥ୍ୟ ଜାଣି ପାରିଥିଲେ । ପିତାଙ୍କ ମୁଖରୁ ଶୁଣିଥିଲେ "ଆମର ଏହି ମହତ କୁଳରେ ତୁମେ ଏକ ମାତ୍ର ଅପତ୍ୟ । ତୁମେ ସତତ ଅସ୍ତ୍ର ଶସ୍ତ୍ର ଚାଳନା ଓ ପୌରୁଷ ଅର୍ଜ୍ଜନରେ ବ୍ୟତିବ୍ୟସ୍ତ । ମନୁଷ୍ୟ ଜୀବନର ଅନିତ୍ୟତା ଚିନ୍ତା କରି ବଂଶ ରକ୍ଷା ପାଇଁ ମୋର ହୃଦୟ ଚିନ୍ତିତ । ମୁଁ ପୁନର୍ବାର ବୃଥାଦାର ପରିଗ୍ରହ କରିବା ପାଇଁ ଉତ୍ସାହିତ ନୁହେଁ, କିନ୍ତୁ ତୁମର ଯଦି ବିପତ୍ତି ଘଟେ ତେବେ ଆମର କୁଳ ରକ୍ଷା ହେବ କିପରି ?

ସେ ଦିନ କୁଳରକ୍ଷା ପାଇଁ ଗାଙ୍ଗେୟ ଦେବବ୍ରତ ଭୀଷ୍ମ ପ୍ରତିଜ୍ଞା କରିଥିଲେ ଏବଂ ଧୀବର ରାଜ ମହାତ୍ମା ଦାସ କନ୍ୟା ସତ୍ୟବତୀଙ୍କୁ ପ୍ରଦାନ କରିଥିଲେ । ଋଷିକାନ୍ତା ସତ୍ୟବତୀ ହେଲେ ଭାରତର ସାମ୍ରାଜ୍ଞୀ

ସାମ୍ରାଜ୍ଞୀ ସତ୍ୟବତୀଙ୍କ ଗର୍ଭରୁ ରାଜ କୁମାର ଚିତ୍ରାଙ୍ଗଦ ଓ ବିଚିତ୍ର ବୀର୍ଯ୍ୟ ଜନ୍ମ ନେଇଥିଲେ । ଗାଙ୍ଗେୟ ସତ୍ୟବ୍ରତ ଭୀଷ୍ମ ସତ୍ୟବତୀଙ୍କ ମତାନୁସାରେ ଅରିନ୍ଦମ ଚିତ୍ରାଙ୍ଗଦଙ୍କୁ ରାଜ୍ୟରେ ଅଭିଷେକ କଲେ ।

---

* ମହାଭାରତ— ଆଦିପର୍ବ—ଗୋବିନ୍ଦ ଚନ୍ଦ୍ର ମହାପାତ୍ର—ଓଡ଼ିଶା ସାହିତ୍ୟ ଏକାଡ଼େମୀ ୧୯୬୫

ବଳବାନ ଗନ୍ଧର୍ବ ରାଜ ଚିତ୍ରାଙ୍ଗଦ ଓ କୁରୁମୁଖ୍ୟ ଚିତ୍ରାଙ୍ଗଦଙ୍କ ମଧ୍ୟରେ କୁରୁକ୍ଷେତ୍ରରେ ହିରଣ୍ୱତୀ ନଦୀ ତୀରରେ ତିନି ବର୍ଷ ଯୁଦ୍ଧ ଲାଗିଲା । ପରିଶେଷରେ ଗନ୍ଧର୍ବରାଜଙ୍କ ଦ୍ୱାରା କୁରୁବୀର ଚିତ୍ରାଙ୍ଗଦ ନିହତ ହେଲେ । ସେତେବେଳକୁ ଅପ୍ରାପ୍ତ ଯୌବନ ଅନୁଜ ବିଚିତ୍ର ବୀର୍ଯ୍ୟ ତଥାପି କୈଶୋର ଅତିକ୍ରମ କରି ନଥିଲେ ।

ଗାଙ୍ଗେୟ ଦେବବ୍ରତଙ୍କର ପ୍ରତିଜ୍ଞା ଯେତେ ସୁସ୍ଥିର ଓ ମେରୁ ପର୍ବତ ସଦୃଶ ଅଟଳ, ତାଙ୍କର ହୃଦୟ ସେତେ କୋମଳ ଓ ପିତାଙ୍କର ମର୍ଯ୍ୟାଦା ରକ୍ଷା ପାଇଁ ବ୍ୟାକୁଳ । ସେଦିନ ଯେତେବେଳେ ତାଙ୍କର ପିତା ମହାରାଜ ଶାନ୍ତନୁ ଇହଧାମରୁ ବିଦାୟ ନେଲେ, ମୁମୂର୍ଷୁ ଅବସ୍ଥାରେ ଅନୁତାପରେ ଦଗ୍ଧ ହୋଇ ଶେଷ ପ୍ରଶ୍ନ କରିଥିଲେ । —"ମହାରାଜ ଭରତଙ୍କର ଏହି ମହାନ ରାଜ ବଂଶର ମର୍ଯ୍ୟାଦା ରକ୍ଷା ହେବତ ?"

ଗାଙ୍ଗେୟ ଦେବବ୍ରତ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ, "ରାମାୟଣ ଓ ମହାଭାରତରେ ଦୁଇଜଣ ମର୍ଯ୍ୟାଦା -ପୁରୁଷ- ସତ୍ୟବ୍ରତ ରାମଚନ୍ଦ୍ର ଓ ଗାଙ୍ଗେୟ ଦେବବ୍ରତ । ଜଣେ ପିତୃସତ୍ୟ ପାଳନ ପାଇଁ ଚଉଦ ବର୍ଷ ବନବାସୀ, ଅନ୍ୟ ଜଣେ ପିତାଙ୍କ ଅଭିଳାଷ ପୂରଣ ପାଇଁ ଆଜୀବନ ବ୍ରହ୍ମଚାରୀ । ପିତାଙ୍କର ଶେଷ ଅଭିଳାଷ ବଂଶରକ୍ଷା ନିଶ୍ଚୟ ହେବ ।"

ଗାଙ୍ଗେୟ ଦେବବ୍ରତ ଅନୁଜ ବିଚିତ୍ର ବୀର୍ଯ୍ୟଙ୍କୁ ରାଜ୍ୟରେ ଅଭିଷିକ୍ତ କରାଇ ରାଜ୍ୟ ଶାସନ କାର୍ଯ୍ୟ ପରିଚାଳନା କଲେ । ଅନୁଜ ଭୀଷ୍ମଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ପିତୃ ପିତାମହ ରାଜ୍ୟକୁ ଶାସନ କଲେ ।

କାଶୀ ପତିଙ୍କର ଅପ୍ସରା ପ୍ରାୟ ସୁନ୍ଦରୀ ତିନିଗୋଟି କନ୍ୟାଙ୍କର ସ୍ୱୟଂମ୍ବର ହେବା ଶୁଣି ଶ୍ରେଷ୍ଠରଥୀ 'ଭୀଷ୍ମ' ମାତା ସତ୍ୟବତୀଙ୍କର ଅନୁମତି ନେଇ ବାରାଣସୀପୁରକୁ ଗମନ କଲେ । ସ୍ୱୟଂମ୍ବର ସଭାରୁ ତିନି ରାଜ କନ୍ୟାଙ୍କୁ କ୍ଷତ୍ରିୟ ମର୍ଯ୍ୟାଦା ସହକାରେ ନେଇ ଆସିଥିଲେ ।

ପଥ ମଧ୍ୟରେ ମହାରଥୀ ଶାଲ୍ୱ ରାଜଙ୍କ ସହିତ ଯୁଦ୍ଧରେ ଶାଲ୍ୱ ପରାସ୍ତ ହୋଇଥିଲେ । ସତ୍ୟବତୀଙ୍କ ପରାମର୍ଶରେ ଯେତେବେଳେ ବିବାହର ଆୟୋଜନ ହେଲା କାଶୀ ପତିଙ୍କର ଜ୍ୟେଷ୍ଠା ସୁତା କହିଥିଲେ । "ପୂର୍ବରୁ

ମହାରଥୀ ଶଲ୍ୟଙ୍କୁ ପତିରୂପେ ମନରେ ବରଣ କରିଥିଲି ଏବଂ ମୋର ପିତାଙ୍କର ମଧ୍ୟ ତଦ୍ରୂପ ଇଚ୍ଛା ।" ଶାନ୍ତନୁ ସୁତ ଭୀଷ୍ମ କାଶୀପତିଙ୍କର ଜ୍ୟେଷ୍ଠା କନ୍ୟା ଅମ୍ବାଙ୍କୁ ଅନୁଜ୍ଞାକରି ଶଲ୍ୟଙ୍କୁ ପ୍ରଦାନ କଲେ । ରାଜକନ୍ୟା ଅମ୍ବିକା ଓ ଅମ୍ବାଳିକାଙ୍କ ସହିତ ଯୁବରାଜ ବିଚିତ୍ରବୀର୍ଯ୍ୟଙ୍କର ବିବାହ ସମ୍ପନ୍ନ ହେଲା । ରୂପ ଯୌବନ ସମ୍ପନ୍ନ ଧର୍ମାତ୍ମା ବିଚିତ୍ରବୀର୍ଯ୍ୟ ଦୁଇରାଣୀ ଅମ୍ବିକା ଓ ଅମ୍ବାଳିକାଙ୍କ ପ୍ରଣୟ ଆବେଶରେ ମୁଗ୍ଧ ରହିଲେ ।

## ( ଖ )

ଦୀର୍ଘ ସାତବର୍ଷ ପରେ— କୁରୁକୁଳ ତଥା ପ୍ରଜାମାନଙ୍କୁ ଶୋକୋଚ୍ଛ୍ୱାସରେ ଭସାଇ ରାଜଯକ୍ଷ୍ମାରେ ଆକ୍ରାନ୍ତ ହୋଇ ଯୁବରାଜ ବିଚିତ୍ରବୀର୍ଯ୍ୟ ଇହଜଗତରୁ ବିଦାୟ ନେଲେ ।

ସାମ୍ରାଜ୍ଞୀ ସତ୍ୟବତୀଙ୍କ କଣ୍ଠ ଆଜି ବାଷ୍ପରୁଦ୍ଧ ! ମହାରାଜା ଭରତଙ୍କର ଏହି ମହାନ୍ ରାଜ ବଂଶର ମର୍ଯ୍ୟାଦା ଆଜି ଭୂଲୁଣ୍ଠିତ ! ମହାରାଜା ଶାନ୍ତନୁ ଆଜି ସନ୍ତାନ ହୀନ । ଆଜି ଗାଙ୍ଗେୟ ଦେବବ୍ରତ ହିଁ କୁରୁ ବଂଶର ଶେଷ ପ୍ରଦୀପ ଶିଖା ମହାରାଣୀ ସତ୍ୟବତୀ ଅନୁନୟ ମିଶ୍ରିତ କଣ୍ଠରେ କହିଲେ— "ଗାଙ୍ଗେୟ ! ଧର୍ମନିଷ୍ଠ ଯଶସ୍ୱୀ କୁରୁବଂଶୀୟ ରାଜା ଶାନ୍ତନୁଙ୍କର କୀର୍ତ୍ତି ଓ ପିଣ୍ଡ ଏକାନ୍ତଭାବେ ତୁମ୍ଭଠାରେ ପ୍ରତିଷ୍ଠିତ । ତୁମ୍ଭର ପ୍ରିୟଭ୍ରାତା ବିଚିତ୍ର ବୀର୍ଯ୍ୟଙ୍କର ମହିଷୀ ରୂପ ଯୌବନ ସମ୍ପନ୍ନା କାଶୀରାଜାଙ୍କର ଦୁଇ ତନୟା ପୁତ୍ରାର୍ଥିନୀ ହୋଇଛନ୍ତି । କେଉଁ ଦୁର୍ବଳ ମୁହୂର୍ତ୍ତରେ ସେହି ଅବମୃଷ୍ୟ ନିର୍ମମ ପ୍ରତିଜ୍ଞାକୁ ଭୁଲିଯାଅ । ତୁମେ ନିୟୋଗ କ୍ରମେ କୁଳରକ୍ଷା ନିମିତ୍ତ ସେମାନଙ୍କଠାରେ ଅପତ୍ୟ ଉତ୍ପାଦନ କରି ଧର୍ମାଚରଣ କର । ଧର୍ମାନୁସାରେ ଦାର ପରିଗ୍ରହ କରି ପିତାମହ ମାନଙ୍କୁ ଉଦ୍ଧାର କର ଏବଂ ଏହି ବଂଶର ମର୍ଯ୍ୟାଦା ରକ୍ଷା କର ।"

ତପସ୍ୱୀ ଧର୍ମାତ୍ମା ଭୀଷ୍ମ କହିଲେ "ହେ ମାତଃ ! ପୃଥିବୀ ଗନ୍ଧ ଗୁଣକୁ ତ୍ୟାଗକରି ପାରେ, ଜଳ ତାର ରସକୁ ଓ ଜ୍ୟୋତି ରୂପକୁ ତ୍ୟାଗ କରିପାରେ, ବାୟୁ ସ୍ପର୍ଶକୁ ତ୍ୟାଗକରି ପାରେ, ସୂର୍ଯ୍ୟ ନିଜର ପ୍ରଭାକୁ ତ୍ୟାଗକରି ପାରନ୍ତି, ଆକାଶ ଶବ୍ଦ ଗୁଣକୁ ତ୍ୟାଗକରି ପାରେ, ଧର୍ମରାଜ ଧର୍ମକୁ ପରିତ୍ୟାଗ କରିପାରନ୍ତି କିନ୍ତୁ ଗାଙ୍ଗେୟ ଦେବବ୍ରତର ପ୍ରତିଜ୍ଞା ମେରୁ ପରି ଅଟଳ ।"

ଚିନ୍ତାକୁଳା ସତ୍ୟବତୀ ପୁତ୍ର ଶୋକରେ ଅଧୀର ହୋଇ କହିଲେ, "ହେ ସତ୍ୟ ପରାକ୍ରମ ! ପିତାଙ୍କ ଅଭିଳାଷ ପୂରଣ ପାଇଁ ତୁମେ ଯେଉଁ ସତ୍ୟ କରିଥିଲ, ତାହା ମୋତେ ଜଣାଅଛି । ତୁମ ପିତାଙ୍କର ଶେଷ ଅଭିଳାଷ ଭରତ ରାଜ ବଂଶର ମର୍ଯ୍ୟାଦା ରକ୍ଷା କରିବା ଦାୟିତ୍ୱ ବହନ କର । ତୁମେ ଶାସ୍ତ୍ରୀୟ ନିୟୋଗ ପ୍ରଥା ଅନୁସାରେ ନିଜର ଭ୍ରାତୃବଧୂଙ୍କ ଗର୍ଭରୁ ସନ୍ତାନ ଜନ୍ମାଇ ଏହି ମହାନ୍ ରାଜବଂଶର ମର୍ଯ୍ୟାଦା ରକ୍ଷାକର ।

ଗାଙ୍ଗେୟ ସତ୍ୟବ୍ରତ ଦୀର୍ଘନିଶ୍ୱାସ ପକାଇ କହିଲେ, "କ୍ଷମା କର ମାତଃ । ଦେବବ୍ରତ କେବଳ ଅବିବାହିତ ରହିବନାହିଁ, କାୟମନ ବାକ୍ୟରେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରିବ । ସତ୍ୟରୁ ବିଚ୍ୟୁତ ହେବା କ୍ଷତ୍ରିୟର ଅଧର୍ମ ଅଟେ । ପୂର୍ବରୁ ନିୟୋଗ ପ୍ରଥା ଅନୁସାରେ ବଂଶରକ୍ଷା ହୋଇଛି । ମନ୍ତ୍ରଦ୍ରଷ୍ଟା ଦୀର୍ଘତମା ଋଷିଙ୍କ ଔରସରୁ ମହାରାଜା ବଳିଙ୍କ ଧର୍ମପତ୍ନୀ ସୁଦେଷ୍ଣାଙ୍କ ଗର୍ଭରୁ, ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ପାଞ୍ଚ ପୁତ୍ର ଜନ୍ମ ହୋଇଥିଲେ ମାତଃ । ଆପଣ ବଂଶରକ୍ଷା ପାଇଁ ଏହି ମର୍ମରେ ଚିନ୍ତା କରନ୍ତୁ ।

( ଗ )

ଋଷିକାନ୍ତା ସତ୍ୟବତୀଙ୍କର ଅତୀତର ଘଟଣା ଗୋଟି ଗୋଟି ହୋଇ ମନରେ ସ୍ଥାନ ପାଇଲା— ସେ ଧୀବର କନ୍ୟା ମତ୍ସ୍ୟଗନ୍ଧା ! ତାଙ୍କ ଦେହରୁ ମତ୍ସ୍ୟଗନ୍ଧ ଆର୍ଯ୍ୟମୁନି ପରାଶରଙ୍କ ଅସୀମ ଦୟାରୁ ଦୂରୀଭୂତ ହୋଇ କପରି ଶରୀରରୁ ପଦ୍ମର ସୌରଭ ବିଚ୍ଛୁରିତ ହୋଇ ଯୋଜନଗନ୍ଧା ଏବଂ ପରେ ସାମ୍ରାଜ୍ଞୀ ସତ୍ୟବତୀ ହେଲେ ।

ଆର୍ଯ୍ୟଋଷିଙ୍କର ଦିବ୍ୟ ପ୍ରଣୟର ଅତୀତ କାହାଣୀ ସ୍ମରଣକରି ନିଜ କାନୀନ ପୁତ୍ର କୃଷ୍ଣଦ୍ୱୈପାୟନଙ୍କର ନୀଳକାନ୍ତ ତନୁ, ଆଜାନୁ ଲମ୍ବିତ ବାହୁ, ପିଙ୍ଗଳଜଟା ଲୋମଶ ଶରୀର— ସେ ଆଜି ବେଦବ୍ୟାସ ରୂପେ ପରିଚିତ । ତପସ୍ୟାରେ ତାଙ୍କ ଶରୀର କୃଶ ଓ କଠିନ । ତାଙ୍କ ମନରେ ନିଜ ପୁତ୍ରର ପ୍ରତିବିମ୍ବ ନାଚି ଉଠିଲା । ସତ୍ୟବତୀଙ୍କର ମନେପଡ଼ିଲା ବିଦାୟ କାଳୀନ ସେହି ଆଶୀର୍ବାଦ । "ମାତଃ ମୋତେ ଆଶୀର୍ବାଦକର, ସ୍ମରଣ ମାତ୍ରେ ମୁଁ ଯେପରି ମାତାଙ୍କର ପାଦପଦ୍ମ ବନ୍ଦନା କରିପାରିବି ।"

ସାମ୍ରାଜ୍ଞୀ ସତ୍ୟବତୀ ଦୀର୍ଘସମୟ ଧ୍ୟାନମଗ୍ନ, ନିଶ୍ଚଳ, ନିରୁଦ୍ଧବାକ୍ ହୋଇ କାମାନପୁନ ଦ୍ୱୈପାୟନ କୃଷ୍ଣଙ୍କୁ ସ୍ମରଣ କଲେ । ସେ ଧୀମାନ୍‌ମାନଙ୍କୁ ବେଦ ପଢ଼ାଉ ଥିଲେ । ତତ୍‌କ୍ଷଣାତ୍ ମାତାଙ୍କ ନିକଟକୁ ଗମନକଲେ । ମାତାଙ୍କୁ ଭୂମିଷ୍ଠ ପ୍ରଣାମ କରି କୁଶଳ ଜିଜ୍ଞାସା କଲେ ।

ସତ୍ୟବତୀ କାତର କଣ୍ଠରେ କହିଲେ "ବତ୍ସ ! ମୁଁ ଜନ୍ମଦାତ୍ରୀ ହେଲେ ମଧ୍ୟ ତୁମେ ମାତୃ ସ୍ନେହରୁ ବଞ୍ଚିତ । ଆର୍ଯ୍ୟଋଷି ପରାଶର ତୁମକୁ ମାତା ଓ ପିତା ଉଭୟଙ୍କ ସ୍ନେହ ଦେଇଛନ୍ତି । କିନ୍ତୁ ପୁତ୍ର ଉପରେ ପିତାଙ୍କର ଯେପରି ଅଧିକାର ମାତାଙ୍କର ମଧ୍ୟ ସମାନ ଅଧିକାର । ଘଟଣା କ୍ରମେ ତୁମେ ଆମର ପ୍ରଥମ ପୁତ୍ର ଓ ବିଚିତ୍ରବୀର୍ଯ୍ୟ ଆମର କନିଷ୍ଠ ସନ୍ତାନ । ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ ଭୀଷ୍ମ ଯେପରି ପିତୃ ସମ୍ବନ୍ଧରେ ଭ୍ରାତା ତୁମେ ମଧ୍ୟ ମାତୃସମ୍ବନ୍ଧରେ ସେହିପରି ଭ୍ରାତା ଅଟ । ହେ ତପସ୍ୱୀ ପୁତ୍ର ! ଆଜି ହସ୍ତିନାର ରାଜବଂଶ ଲୁପ୍ତପ୍ରାୟ ! ବିଶ୍ରୁତ କୀର୍ତ୍ତି ଭରତଙ୍କର ଏହି ମହାନ୍ ରାଜବଂଶରେ ଗୌରବ ଓ ମର୍ଯ୍ୟାଦା ରକ୍ଷା କରିବାକୁ ମୁଁ ମହାରାଜ ଶାନ୍ତନୁଙ୍କୁ ପ୍ରତିଶ୍ରୁତି ଦେଇଥିଲି । ତାହା ଆଜି ବିଫଳ ହୋଇଛି । ଶାନ୍ତନୁ ନନ୍ଦନ ଭୀଷ୍ମ ତାଙ୍କର କାୟମନୋ ବାକ୍ୟରେ ବ୍ରହ୍ମଚର୍ଯ୍ୟ ପାଳନରେ ଅଟଳ । ତୁମର କନିଷ୍ଠ ଭ୍ରାତା ଯୁବରାଜ ବିଚିତ୍ରବୀର୍ଯ୍ୟଙ୍କର ଦୁଇପତ୍ନୀ ଦେବକନ୍ୟା ସମାନ ଓ ରୂପଯୌବନ ସମ୍ପନ୍ନା । ସେମାନେ ଧର୍ମତଃ ପୁତ୍ରାର୍ଥିନୀ ହୋଇଛନ୍ତି । ଭରତ ବଂଶର ପୂର୍ବପୁରୁଷ ମାନଙ୍କୁ ପୁତ୍ରନରକରୁ ଅଶେଷ ମନ୍ତ୍ରବଳରୁ ତୁମେହିଁ ରକ୍ଷାକରି ପାରିବ ।"

ତପସ୍ୱୀ ବେଦବ୍ୟାସ ଦୀର୍ଘଶ୍ୱାସ ପକାଇ କହିଲେ, "ମାତଃ ! ମୁଁ ଆପଣଙ୍କ ଅଭିପ୍ରାୟ ବୁଝିଲି, ମୁଁ ଆପଣଙ୍କ ଆଦେଶ ପାଳନ କରିବି କିନ୍ତୁ ରାଣୀ ଦ୍ୱିହେଁ ମୋର ବିରୂପତା ଗନ୍ଧ, ରୂପ, ବେଶ ଓ ବପୁକୁ ସହ୍ୟ କରନ୍ତୁ ।"

"ତୁ ଯେ କଥାକୁହେଲା ନିକରସିରେ ବାବୁ
ବଡ଼ବଧୂ ଅମ୍ବିକା ତାଙ୍କ ପୁରକୁ ଯେତେକ୍ଷଣି ଯିବୁ
ବ୍ୟାସ ବୋଇଲେ ମୋହର ହୋଇଲା ସନମତ
ତୁମେ ଯାଇଁ ତଆରି ବଧୂ ଯେ ମାନନ୍ତ ।*"

---

* ସାରଳା ମହାଭାରତ, ସମ୍ପାଦନା ଓ ଆଲୋଚନା ଡ଼ଃ କୃଷ୍ଣ ଚରଣ ସାହୁ
ପୃ ୯୨

## ( ଘ )

ପୁତ୍ରବଧୂ ଅମ୍ବିକାଙ୍କ ଶୟନ କକ୍ଷ ଆଜ ସୁସଜ୍ଜିତ । ଶ୍ୱଶ୍ରୂ ସତ୍ୟବତୀ ରତ୍ନସ୍ନାତା ବଧୂଙ୍କ କକ୍ଷରେ ପ୍ରବେଶକରି କହିଲେ, "ହେ କୌଶଲ୍ୟେ, ମୋର ଜ୍ୟେଷ୍ଠ ପୁତ୍ର ବେଦବ୍ୟାସ ଆଜ ନିଶୀଥରେ ତୁମଠାରେ ସ୍ୱଧର୍ମ ରକ୍ଷାକରିବେ । ତୁମେ ତୁମର ସ୍ୱାମୀଙ୍କୁ ଚିନ୍ତାକରି ଶୁଭ ଶଯ୍ୟାରେ ଶୟନ ପୂର୍ବକ ପ୍ରତୀକ୍ଷା କର ।"

ରାଜବଧୂ ଅମ୍ବିକା ମିଳନ ଆଶାରେ ବ୍ରୀଡ଼ା ଓ ଉତ୍କଣ୍ଠାର ସହ ପ୍ରତୀକ୍ଷା କରି ରହିଲେ । କଳ୍ପନାରେ କୃଷ୍ଣଦ୍ୱୈପାୟନଙ୍କ ମୂର୍ତ୍ତିଚିନ୍ତା କରୁଥିଲେ, ବେଳେ ବେଳେ ଋଷିଙ୍କ ମୂର୍ତ୍ତି ନୟନ ପଲକରେ ଅଙ୍କିତ ହୋଇଯାଉଥାଏ । ଶୟନ କକ୍ଷ ନିସ୍ତବ୍ଧ । ମିଞ୍ଜି ମିଞ୍ଜି ହୋଇ ପ୍ରଦୀପ ଜଳୁଥାଏ । ଏକ ଋକ୍ଷଣ କାମ୍ୟ ଛାୟା ମୂର୍ତ୍ତି ପରି ମହର୍ଷି ବେଦବ୍ୟାସ ଅମ୍ବିକାଙ୍କ ଶୟନ କକ୍ଷ ମଧ୍ୟରେ ପ୍ରବେଶ କଲେ । କୃଷ୍ଣବର୍ଣ୍ଣ ପ୍ରଭୁଙ୍କର ପିଙ୍ଗଳବର୍ଣ୍ଣ ଜଟା, ପ୍ରଦୀପ୍ତ ଲୋଚନ ବିଶାଳ ଶ୍ମଶ୍ରୁ ଓ ଭ୍ରୂଯୁଗଳ— ଓଃ କି ଭୟଙ୍କର ! ରାଜବଧୂ ଅମ୍ବିକା କୃଷ୍ଣଦ୍ୱୈପାୟନଙ୍କ ଘୃତାକ୍ତ ଶରୀରର ରୂପ ଓ ଗନ୍ଧକୁ ସହ୍ୟ କରି ନପାରି ଭୟ ଓ ଘୃଣାରେ ଚକ୍ଷୁ ନିମୀଳନ କଲେ । ନିଜର ଅନିଚ୍ଛା ସତ୍ତ୍ୱେ ମହର୍ଷି ମାତାଙ୍କର ଆଦେଶ ପାଳନ କଲେ ।

ଶୟନ କକ୍ଷରୁ ବାହାରିଲା ପରେ ମାତା ସତ୍ୟବତୀ ବେଦବ୍ୟାସଙ୍କୁ ବଂଶର ଭବିତବ୍ୟ ସମ୍ପର୍କରେ ପଚାରିଲେ । ବେଦବ୍ୟାସ ଗମ୍ଭୀର ଭାବେ ଉତ୍ତର ଦେଲେ,

ନିଶମ୍ୟ ତଦ୍ ବଚୋ ମାତୁ ବ୍ୟାସଃ ସତ୍ୟବତୀ ସୁତଃ<br>
ନାଗାୟୁତ ସମ ପ୍ରାଣେ ବିଦ୍ୱାନ୍ ରାଜର୍ଷି ସତ୍ୟମଃ ।<br>
ମହାଭାଗୋ ମହାବୀର୍ଯ୍ୟୋ ମହା ବୁଦ୍ଧିର୍ଭବିଷ୍ୟତି<br>
ତସ୍ୟ ଚାପି ଶତଂପୁତ୍ରା ଭବିଷ୍ୟନ୍ତି ମହାତ୍ମନଃ ॥<br>
କିଂତୁ ମାତୁଃ ସ ବୈଗୁଣ୍ୟାଦନ୍ଧ ଏବଂ ଭବିଷ୍ୟତି ।<br>
ତସ୍ୟତଦ୍ ବଚନଂ ଶ୍ରୁତ୍ୱା ମାତା ପୁତ୍ର ମଥା ବ୍ରବିତ୍ (୯-୧୦)

ବ୍ୟାସଦେବ କହିଲେ, "ଏହାଙ୍କଠାରୁ ଯେଉଁ ପୁତ୍ରଜାତ ହେବ ତାହାଙ୍କର ଦଶ ସହସ୍ର ହସ୍ତୀର ପରାକ୍ରମ ହେବ । ସେ ବିଦ୍ୱାନ ଓ ରାଜର୍ଷିଙ୍କ ମଧ୍ୟରେ ଶ୍ରେଷ୍ଠ ହେବ । ତାହାଙ୍କର ଭାଗ୍ୟ, ବୀର୍ଯ୍ୟ ଓ ବୁଦ୍ଧି ଅତି ଉତ୍କୃଷ୍ଟ ହେବ ଏବଂ ତାଙ୍କର ଶତ ପୁତ୍ର ହେବ । କିନ୍ତୁ ମା, ରାଜ ବଧୂ ଅମ୍ବିକାଙ୍କର ମୋ ପ୍ରତି ବୈଗୁଣ୍ୟ ହେତୁ ଜନ୍ମିତ ସନ୍ତାନ ଜନ୍ମାନ୍ଧ ହେବ ।

ସତ୍ୟବତୀଙ୍କ ଅସମୟରେ ବଜ୍ର ପତିତ ହେବାପରି ଲାଗିଲା ସେ କହିଲେ, "ବତ୍ସ ! ଅନ୍ଧ ହେଲେ କୁରୁବଂଶୀୟ ନରପତିଙ୍କ ଯୋଗ୍ୟ ହେବ ନାହିଁ, କାରଣ ଆର୍ଯ୍ୟପ୍ରଥା ଅନୁଯାୟୀ କୌଣସି ଜନ୍ମାନ୍ଧ ବ୍ୟକ୍ତି ଅଭିଷେକର ଅଯୋଗ୍ୟ ।" ସତ୍ୟବତୀ ପୁନଶ୍ଚ ବେଦବ୍ୟାସଙ୍କୁ କନିଷ୍ଠ ବଧୂ ଅମ୍ବାଳିକାଙ୍କ ସହିତ ମିଳିତ ହେବା ପାଇଁ ଆଦେଶ ଦେଲେ ।

ସତ୍ୟବତୀ ଶୁଦ୍ଧସ୍ନାତା ପୁତ୍ରବଧୂ ଅମ୍ବାଳିକାଙ୍କୁ ପୂର୍ବପରି ପ୍ରତୀକ୍ଷା କରିବାକୁ କହିଲେ ।

"ଯେବେ ବ୍ୟାସ ଆସିବେ କ ତୁମର ଭୁବନକୁ
ଭାବେଣ ଭଣତ ତୁ ହୋଇବ ତାହାଙ୍କୁ ।
ଯେକ ମନେ ଯେକ ଚତ୍ତେ ବଢ଼ାଅ ପୀରତି
ରାଜ୍ୟ ଧର୍ମକର ଏବେ ତୁମର ଉତପତ୍ତି ।"

॥୧୯-୨୦॥ (ସାରଳା ମହାଭାରତ)

କାଶୀରାଜକନ୍ୟା ଅମ୍ବାଳିକା ମାତୃତ୍ୱର କାମନା ନେଇ ବେଦବ୍ୟାସଙ୍କ ଆଗମନକୁ ପ୍ରତୀକ୍ଷା କରିଥାନ୍ତି । ପୂର୍ବପରି ଘୃତାକ୍ତ ଶରୀରରେ କୃଷ୍ଣଦ୍ୱୈପାୟନ ଶୟନ କକ୍ଷରେ ପ୍ରବେଶ କଲେ । ପୂର୍ବରୁ ସମସ୍ତ ପ୍ରସ୍ତୁତି ମଧ୍ୟରେ ମଧ ଦ୍ୱୈପାୟନଙ୍କ ଭୟଙ୍କର ରୂପ ଦେଖି ଅମ୍ବାଳିକା ମୂର୍ଚ୍ଛିତା ହେଲେ ଓ ତାଙ୍କ ଶରୀରବର୍ଣ୍ଣ ଓ ପାଣ୍ଡୁର ବର୍ଣ୍ଣ ହୋଇଗଲା । ମହର୍ଷି ମାତାଙ୍କର ଆଦେଶ ପାଳନ କଲେ—

※ ମହାଭାରତ— ଆଦିପର୍ବ— (୯-୧୦)

"ଯସ୍ମାତ ପାଣ୍ଡୁତ୍ୱମାପନ୍ନା ବିରୂପଂ ପ୍ରେକ୍ଷ୍ୟ ମାମିହ
ତସ୍ମା ଦେଷ ସୁତ ସ୍ତେବୈ ପାଣ୍ଡୁରେବ ଭବିଷ୍ୟତି
ନାମ ଚୈତସ୍ୟ ତଦେବେହ ଭବିଷ୍ୟତି ଶୁଭାନନେ
ଇତ୍ୟୁକ୍ତା ସ ନିରକ୍ରାମଦ୍ ଭଗବାନୃଷି ସତ୍ତମଃ ।
॥୧୮-୧୯॥ (ମହାଭାରତ ଆଦିପର୍ବ)

ସତ୍ୟବତୀଙ୍କୁ ବ୍ୟାସ ଦେବ କହିଲେ, 'ମୋର ଶରୀରର ବିରୂପତା ଓ ରୁକ୍ଷ ବେଶକୁ ଦେଖି ଅମ୍ବାଳିକା ଭୟଭୀତା ହୋଇ ପାଣ୍ଡୁରବର୍ଣ୍ଣ ହୋଇଗଲେ । ତେଣୁ ଏହି ସନ୍ତାନ ପାଣ୍ଡୁର ବର୍ଣ୍ଣ ହେବ ଏବଂ ସଂସାରରେ ତାର ନାମ ହେବ 'ପାଣ୍ଡୁ' ।

ସତ୍ୟବତୀ ପୁଣି ଚିନ୍ତିତ ହୋଇ କହିଲେ, "ବତ୍ସ ! ଗୋଟିଏ ପୁତ୍ର ଜନ୍ମାନ୍ଧ ଏବଂ ଏପୁତ୍ରଟି ପାଣ୍ଡୁବର୍ଣ୍ଣ ହେଲା । ତେଣୁ ଆଉ ଏକ ପୁତ୍ର ପାଇଁ ଇଚ୍ଛାକରୁଛି, ଯଥା ସମୟରେ ସ୍ମରଣ କରିବ ।"

ବେଦବ୍ୟାସ ତଥାସ୍ତୁ କହି ପ୍ରସ୍ଥାନ କଲେ । ସାମ୍ରାଜ୍ଞୀ ସତ୍ୟବତୀ ଭୀଷ୍ମଙ୍କ ସହିତ ପରାମର୍ଶ କରି ଅମ୍ବିକାଙ୍କୁ କହିଲେ, ସମର୍ଥ ରତି ଅଭାବରୁ ନିୟୋଗ ମିଳନ ବିଡ଼ମ୍ବିତ ହେଲା ତୁମେ ମହର୍ଷିଙ୍କର ଦିବ୍ୟ ପ୍ରଣୟ ପ୍ରତି ଅସହିଷ୍ଣୁ ନହୋଇ କୃଷ୍ଣଦ୍ୱୈପାୟନଙ୍କ ପଦ ବନ୍ଦନା କରି ଉତ୍ତମ ସନ୍ତାନର ଜନନୀ ହେବାପାଇଁ ଆଶୀର୍ବାଦ ଭିକ୍ଷାକର ।

ମାତା ସତ୍ୟବତୀଙ୍କ ଆଦେଶରେ ମହର୍ଷିବ୍ୟାସ ଜ୍ୟେଷ୍ଠ ବଧୂ ଅମ୍ବିକାଙ୍କ ପ୍ରାସାଦରେ ପ୍ରବେଶ କଲେ । ପୂର୍ବରୁ ଦେବ କନ୍ୟା ତୁଲ୍ୟ ଅମ୍ବିକା ମହର୍ଷିଙ୍କର ରୂପ ଓ ଗନ୍ଧକୁ ଚିନ୍ତାକରି ଶ୍ୱଶ୍ରୂ ସତ୍ୟବତୀଙ୍କ ସମ୍ମୁଖରେ କିଛି ବୈପରୀତ୍ୟ ନଦେଖାଇ ନିଜର ଭୂଷଣରେ ଅପ୍ସରୋପମା ନିଜର ଦାସୀଙ୍କୁ ଭୂଷିତା କରି ଦ୍ୱୈପାୟନ କୃଷ୍ଣଙ୍କ ନିକଟକୁ ପ୍ରେରଣ କଲେ ।

ଦାସୀ ଅମ୍ବୁବତୀ* ଋଷିଙ୍କର ଦିବ୍ୟ ପ୍ରଣୟର ପ୍ରତୀକ୍ଷାରେ ଆଜି ଆତ୍ମହରା । ଅମ୍ବୁବତୀଙ୍କର ଦାସୀ ଜୀବନରେ ତାହା ଥିଲା ଆଶା ଆକାଙ୍କ୍ଷାର ପରମ ସୌଭାଗ୍ୟର ମୁହୂର୍ତ୍ତ । ମହର୍ଷି ବେଦବ୍ୟାସ ଅମ୍ବୁବତୀଙ୍କ କକ୍ଷରେ ପ୍ରବେଶ

କରନ୍ତେ ଗାତ୍ରୋତ୍ଥାନ ଓ ଅଭିବାଦନ କରି ଆଜ୍ଞା ପ୍ରମାଣେ ଉପବିଷ୍ଟ ହୋଇ ଋଷିଙ୍କର ସତ୍କାର କରି ପଦ ବନ୍ଦନା କଲେ ।

"ଅମ୍ବିକା ଅମ୍ବାଳିକା ଠାରୁ ଜାଣିଛନ୍ତି ଶାନ୍ତ
ତତକ୍ଷଣେ ଅନେକ ବେଶ ହୋଇଲା ପ୍ରିୟବନ୍ତୀ
ବ୍ୟାସଙ୍କର ଶୃଙ୍ଗାର ସମ୍ବନ୍ଧକ ଯୁବତୀ
ହରଷେଣ ରସିଲା ସେ ମେଳଭାବ ମତି

( ୯ ) ( ସାରଳା ମହାଭାରତ )

ନଷିକ୍ତା ପ୍ରଣୟିନୀ ଅମ୍ବୁବତୀ ମହର୍ଷିଙ୍କର ଦିବ୍ୟତାରେ ବିମୁଗ୍ଧିଭୂତ ହେଲେ । ଶଂସିତ ବ୍ରତ ମହର୍ଷି ବେଦବ୍ୟାସ ପ୍ରଣୟରେ ତୁଷ୍ଟ ହୋଇ ତେଜସ୍ୱୀ ଓ ଧର୍ମାତ୍ମା ସନ୍ତାନ ଉଦ୍ଦେଶ୍ୟରେ ଗର୍ଭାଧାନ ସମାହିତ କଲେ ।

"ସଯଜ୍ଞେ ବିଦୁରୋ ନାମ କୃଷ୍ଣଦ୍ୱୈପାୟନାତ୍ମଜଃ
ଧୃତରାଷ୍ଟ୍ରସ୍ୟ ବୈ ଭ୍ରାତା ପାଣ୍ଡୋଶ୍ଚୈବ ମହାତ୍ମନଃ ( ୨୮ )

( ମହାଭାରତ ଆଦିପର୍ବ )

ରାଜ ବଧୂ ଅମ୍ବିକା ଓ ଅମ୍ବାଳିକାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମ ନେଇଥିଲେ । କୃଷ୍ଣଦ୍ୱୈପାୟନଙ୍କ ଔରସରୁ ଦାସୀ ଅମ୍ବୁବତୀଙ୍କ ଗର୍ଭରୁ ଧର୍ମାତ୍ମା ବିଦୁର ଜନ୍ମ ନେଲେ । ବିଦୁର ଚିତ୍ର ସମ୍ପର୍କରେ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କର ଭ୍ରାତା, ଧୃତରାଷ୍ଟ୍ର ଜନ୍ମାନ୍ଧ, ପାଣ୍ଡୁ ଶରବର୍ଣ୍ଣ ଓ ବିଦୁର ସର୍ବଦା ଜ୍ଞାନପ୍ରଦ । ମାଣ୍ଡବ୍ୟ ଋଷିଙ୍କ ଅଭିଶାପରୁ ଧର୍ମ ବିଦୁର ରୂପେ ଜନ୍ମ ନେଇଥିଲେ । ରାଜନୀତି, ବିଦ୍ୱତ୍ତା ଓ ବିଚକ୍ଷଣ ବୁଦ୍ଧିରେ ବିଦୁରଙ୍କ ସମ କକ୍ଷ କେହି ନଥିଲେ । ମହାରାଣୀ ସତ୍ୟବତୀ ଓ ଗାଙ୍ଗେୟ ସତ୍ୟବ୍ରତ ଭୀଷ୍ମ ବିଦୁରଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । ଓଡ଼ିଶାର ବେଦବ୍ୟାସ ଭାରତର ଇତିହାସକୁ ପୁନଃ ବିନ୍ୟାସ କରି ଅନବଦ୍ୟ କରି ପାରିଛନ୍ତି ।

---

* ସାରଳା ମହାଭାରତରେ ଅମ୍ବୁବତୀ ରାଜକନ୍ୟା ଏବଂ ବିଚିତ୍ରବୀର୍ଯ୍ୟଙ୍କର ଭୃତ୍ୟପତ୍ନୀ ବୋଲି ଦର୍ଶାଇଛନ୍ତି ।

ହରି କେଶରି ଦେଶରେ କେଶବ ଦାସ ନୃପତି
ସେ ରାଜା ଅଟଇ ସୂର୍ଯ୍ୟ ବଂଶରେ ଉତ୍ପତ୍ତି
ତାହାର ଦୋହିତା ଅଟଇ ଅମ୍ବୁବତୀ
ତାହାଙ୍କୁ ପ୍ରଦାନ ହୋଇଥିଲେ ବଚସର୍ଯ୍ୟନୃପତି ( ୪ )
( ସାରଳା ମହାଭାରତ )

* ଶ୍ରୀମନ୍ ମହର୍ଷି ବେଦବ୍ୟାସ ପ୍ରଣୀତ ମହାଭାରତ— ପ୍ରଥମ ଖଣ୍ଡ ( ଆଦିପର୍ବ ଊରସଭାପର୍ବ ) ହିନ୍ଦି ଅନୁବାଦକ ପଣ୍ଡିତ ରାମନାରାୟଣ ଦତ୍ତ ; ଶାସ୍ତ୍ରୀ ପାଣ୍ଡେୟ ( ରାମ ), ଗୀତା ପ୍ରେସ୍ ଗୋରଖ ପୁର ।



# ଚତୁର୍ଥ ପରିଚ୍ଛେଦ

## ମହର୍ଷିବ୍ୟାସ

ରାଉରକେଲାର ଉପକଣ୍ଠରେ ଶଙ୍ଖ ଓ କୋଇଲ ନଦୀର ସଙ୍ଗମ ସ୍ଥଳୀଟି 'ବେଦବ୍ୟାସ' ନାମରେ ନାମିତ । ପ୍ରକୃତରେ ସେ ବେଦବ୍ୟାସ କିଏ ? ସେହି ମହର୍ଷିଙ୍କର ଐତିହାସିକତା କଣ ଅଛି ? ଆମେ ଆଜି ଯେକୌଣସି ପୁରାଣ ଦେଖିବା ତାହା ବେଦବ୍ୟାସ କୃତବୋଲି ବର୍ଣ୍ଣିତ ହୋଇଛି କିନ୍ତୁ ମନରେ ସ୍ୱତଃ ପ୍ରଶ୍ନଆସେ ଜଣେ ବେଦବ୍ୟାସ ସମସ୍ତ ପୁରାଣ ରଚନା କରିଛନ୍ତିକି ? ପୁରାଣ ମାନଙ୍କର ରଚନା କାଳକୁ ବିବେଚନା କଲେ, ସମସ୍ତ ପୁରାଣ ବେଦବ୍ୟାସ କୃତ ଲେଖା ଥିଲେ ମଧ୍ୟ ସେହି ପୁରାଣ ଗୁଡିକ ବିଭିନ୍ନ ସମୟରେ ରଚନା କରାଯାଇଛି । ବହୁ ପଣ୍ଡିତ ମାନଙ୍କର ମତ ହେଲା ତତ୍କାଳୀନ ପୁରାଣ ରଚୟିତା ଲେଖକମାନେ ପରମ ମନୀଷୀ ବେଦର ବ୍ୟାଖ୍ୟାକାରୀ ବେଦବ୍ୟାସଙ୍କୁ ବିଶେଷ ସମ୍ମାନ ଦେବା ଉଦ୍ଦେଶ୍ୟରେ ତାଙ୍କ ନାମରେ ଉତ୍ସର୍ଗ କରୁଥିଲେ । ଏବେ ମଧ୍ୟ ଦେଖାଯାଏ ବହୁ କାବ୍ୟ ସାହିତ୍ୟ ଲେଖକ ଓ କବିମାନେ ତାଙ୍କର ଇଷ୍ଟଦେବ ଦେବୀ ସମ୍ମାନସ୍ପଦ ବ୍ୟକ୍ତି, ରାଜା ମହାରାଜାଙ୍କ ନାମରେ ଭଣିତ କରିଛନ୍ତି ।

କେତେକ ପଣ୍ଡିତଙ୍କ ମତ ସେ ଯୁଗରେ ପୁରାଣ ଶାସ୍ତ୍ର ରଚୟିତା ମାନଙ୍କୁ ବ୍ୟାସ ନାମରେ ସମ୍ବୋଧିତ କରାଯାଉଥିଲା । ଆଉ ଅନେକଙ୍କ ମତ ହେଲା ବହୁ ପ୍ରାଚୀନ କାଳରୁ ଭାରତର ଉତ୍ତର ପଶ୍ଚିମାଞ୍ଚଳରେ ଏକ ଜାତି ବସବାସ କରୁଥିଲେ । ସେମାନଙ୍କର ଉପାଧି ଥିଲା ବ୍ୟାସ । ସେମାନଙ୍କର ଜୀବିକା ଥିଲା ମୂଳ ଗ୍ରନ୍ଥରୁ ଟୀକା ଲେଖିବା ଏବଂ ତତ୍କାଳୀନ କାହାଣୀ କିମ୍ବଦନ୍ତୀକୁ ପୁରାଣ ଆକାରରେ ଲିପିବଦ୍ଧ କରିବା

ସେଥିପାଇଁ ପାତଞ୍ଜଳିଙ୍କ ପରବର୍ତ୍ତୀ ସମୟ ବ୍ୟାସଙ୍କ ସମୟ ବୋଲି ଧରାଯାଇଛି । ଉପଲବ୍ଧ ଯୋଗ ସୂତ୍ରମାନଙ୍କର ରଚୟିତାଙ୍କ ନାମ ପାତଞ୍ଜଳି । ଯାଜ୍ଞବଲ୍କ୍ୟ ସ୍ମୃତି (ହିରଣ୍ୟ ଗର୍ଭୋ ଯୋଗସ୍ୟ ବକ୍ତା ନାନ୍ୟଃ ପୁରାତନଃ) ଅନୁସାରେ ହିରଣ୍ୟ ଗର୍ଭ ଯୋଗର ବକ୍ତା ପାତଞ୍ଜଳି କେବଳ ଯୋଗର ଅନୁଶାସନ କରିଛନ୍ତି । ଭାରତୀୟ ପରମ୍ପରା ଅନୁସାରେ ଯୋଗ ସୂତ୍ର ରଚୟିତା ଓ ବ୍ୟାକରଣ ମହାଭାଷ୍ୟ ନିର୍ମାତା ପାତଞ୍ଜଳି ଏକ ଏବଂ ଅଭିନ୍ନ ବ୍ୟକ୍ତି * ଯୋଗଦର୍ଶନରେ ଚାରି ପାଦ ଅଛି ଯାହାର ସୂତ୍ର ସଂଖ୍ୟା (୫୧+୫୫+୫୫+୩୪) = ୧୯୫ । ପ୍ରଥମ ସମାଧି, ଦ୍ୱିତୀୟ—ଯୋଗର ଅଷ୍ଟାଙ୍ଗ ଆଦି, ତୃତୀୟ (ବିଭୂତି) ଧ୍ୟାନ, ଧାରଣା ଆଦି ଏବଂ ଚତୁର୍ଥ (କୈବଲ୍ୟ) ସମାଧି ସିଦ୍ଧି ନିର୍ମାଣ ଚିତ୍ତ, ବିଜ୍ଞାନ ବାଦ—ନିରାକରଣ ଇତ୍ୟାଦି । ତୃତୀୟ ପାଦର ଅନ୍ତରେ 'ଇତି' ଶବ୍ଦର ପ୍ରୟୋଗ ଦ୍ୱାରା ଏବଂ ଚତୁର୍ଥ ପାଦରେ ମତାନ୍ତର ଖଣ୍ଡନ କରିବା ଦ୍ୱାରା ବହୁ ପଣ୍ଡିତଙ୍କ ମତ ହେଉଛି ପାତଞ୍ଜଳି ପ୍ରଥମ ତିନି ପାଦ ରଚନା କରିଛନ୍ତି ଏବଂ ପରବର୍ତ୍ତୀ ଦର୍ଶନାକାର ବ୍ୟାସ ଦେବ ଚତୁର୍ଥ ପାଦକୁ ରଚନା କରିଛନ୍ତି ।

ପାତଞ୍ଜଳ ଯୋଗ ଦର୍ଶନ ଉପରେ 'ବ୍ୟାସଭାଷ୍ୟ' ଅତ୍ୟନ୍ତ ପ୍ରାମାଣିକ ଗ୍ରନ୍ଥ ବୋଲି ସ୍ୱୀକୃତ ହୋଇଛି । ଯୋଗ ସୂତ୍ର ମାନଙ୍କର ନିଗୂଢ଼ ତତ୍ତ୍ୱମାନଙ୍କ ଉଦ୍ଭାବନ କରିବାରେ ଏହି ଭାଷ୍ୟ ଅତ୍ୟନ୍ତ କୃତ କାର୍ଯ୍ୟ ହୋଇଛି । ଏହାର ରଚୟିତା "ବ୍ୟାସ" କିଏ ? ଏହି ବ୍ୟାସ ନିଶ୍ଚିତ ଭାବେ ଅଷ୍ଟାଦଶ ପୁରାଣମାନଙ୍କର ରଚୟିତା ବ୍ୟାସଙ୍କ ଠାରୁ ଭିନ୍ନ । କାରଣ ବେଦବ୍ୟାସଙ୍କର ସମୟ ଅତି ପ୍ରାଚୀନ ଓ ଯୋଗସୂତ୍ରର ବ୍ୟାଖ୍ୟାକାର ବ୍ୟାସଦେବ ବିକ୍ରମ ତୃତୀୟ ଶତାବ୍ଦୀରୁ ପ୍ରାଚୀନ ନୁହନ୍ତି । ତେଣୁ ଏହି ସବୁ ତଥ୍ୟକୁ ବିଚାରକୁ ନେଲେ ଦ୍ୱାପର ଯୁଗର ମହର୍ଷି ବେଦବ୍ୟାସ ଯାହାଙ୍କ ପ୍ରକୃତ ନାମ କୃଷ୍ଣ-ଦ୍ୱୈପାୟନ ତାଙ୍କ ସହିତ ଏହି ବ୍ୟାସଦେବଙ୍କର କୌଣସି ସମ୍ପର୍କ ନାହିଁ ।

---

* ଯୋଗେନ ଚିତ୍ତସ୍ୟ ପଦେନ ବାଚାଂ ମଳଂ ଶରୀରସ୍ୟ ଚ ବୈଦ୍ୟକେନ ।
ଯୋଽପାକରୋତ୍ତଂ ପ୍ରବରଂ ମୁନୀନାଂ ପତଞ୍ଜଳିଂ ପ୍ରାଞ୍ଜଳି ରାନତୋଽସ୍ମି ।
(ଭୋଜବୃତ୍ତି)

— ଭାରତୀୟ ଦର୍ଶନ—ଅଧ୍ୟାପକ ବଳଦେବ ଉପାଧ୍ୟାୟ କୃତ ଅନୁବାଦକ
—ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର (ଓଡ଼ିଶା ସାହିତ୍ୟ ଏକାଡେମୀ ପୃ-୩୯)

ମହର୍ଷି ବାଦରାୟଣ ଉତ୍ତର ମୀମାଂସା ଅର୍ଥାତ୍ ବ୍ରହ୍ମସୂତ୍ରର ଲେଖକ ଅଟନ୍ତି । ଏହି ମହର୍ଷିଙ୍କ ସମ୍ବନ୍ଧରେ ନିଶ୍ଚିତ ଭାବରେ ଏପରି ପ୍ରସିଦ୍ଧି ପ୍ରଚଳିତ ରହି ଆସିଛି, ଯେଉଁଥିରୁ ଜଣାଯାଏ ଏହି ମହର୍ଷି ହିଁ ପରାଶର ଋଷିଙ୍କର ପୁତ୍ର କୃଷ୍ଣଦ୍ୱୈପାୟନ ବେଦବ୍ୟାସ ଅଟନ୍ତି । ଏହି ମହର୍ଷି ମହାଭାରତ ସମୟରେ ଥିଲେ ଏବଂ କୁରୁକ୍ଷେତ୍ରରେ ହେଉଥିବା ଯୁଦ୍ଧର ସମସ୍ତ ଘଟଣା ସମ୍ବନ୍ଧରେ ଧୃତରାଷ୍ଟ୍ରଙ୍କୁ ପରିଚିତ କରାଇବା ନିମନ୍ତେ ସଞ୍ଜୟଙ୍କୁ ଦିବ୍ୟ ଦୃଷ୍ଟି ଦେଇଥିଲେ । ଏହି ମହର୍ଷି ସ୍ୱୟଂ ମହାଭାରତ ଓ ଗୀତାର ରଚୟିତା ଅଟନ୍ତି ।

ବାଦରାୟଣର ଅର୍ଥ ବାଦରିଙ୍କର ପୁତ୍ର । ଏଥିରୁ ପ୍ରମାଣିତ ହେଉଅଛି ଯେ ପରାଶର ଋଷିଙ୍କର ଅନ୍ୟନାମ ବାଦରି ଥିଲା । ବାଦରି ଆଚାର୍ଯ୍ୟଙ୍କର ନାମ ବ୍ରହ୍ମସୂତ୍ରରେ ଚାରିଥର (୧।୨।୩୦, ୩।୧।୧୧, ୪।୩।୭, ୪।୪।୧୦) ଏବଂ ଜୈମିନିଙ୍କର ମୀମାଂସା ସୂତ୍ରରେ ଚାରିଥର (୩।୧।୩, ୬।୧।୨୭, ୮।୩।୬, ୯।୨।୩୦) ଦେଖିବାକୁ ମିଳେ ।

ଆଚାର୍ଯ୍ୟ ବାଦରି ଦୁଇ କର୍ମ-ମୀମାଂସା ଓ ଜ୍ଞାନ-ମୀମାଂସା ଉଭୟ ବିଷୟରେ ସୂତ୍ରଗ୍ରନ୍ଥ ରଚନା କରିଥିଲେ । ଏହାଙ୍କ ମତରେ ବୈଦିକ କର୍ମରେ ସମସ୍ତଙ୍କର ଅଧିକାର ଅଛି । ସେଥିରେ ଜନ୍ମର ଜାତିଭେଦକୁ କୌଣସି ସ୍ଥାନ ଦିଆଯାଇ ନାହିଁ । ପ୍ରାଚୀନ କାଳରେ ଉପନିଷଦକୁ ବେଦାନ୍ତ କୁହାଯାଉଥିଲା କିନ୍ତୁ ଏଗୁଡିକ ଭିନ୍ନ ଭିନ୍ନ ଋଷିଙ୍କ ଦ୍ୱାରା ଭିନ୍ନ ଭିନ୍ନ ସମୟରେ ରଚନା କରାଯାଇଥିବାରୁ ସେମାନଙ୍କ ବିଷୟରେ ଭିନ୍ନତା ହେବା ସ୍ୱାଭାବିକ । ସେତେବେଳେ ମହର୍ଷି ବାଦରାୟଣ ଆପଣାର ବ୍ରହ୍ମ ସୂତ୍ରରେ ସମସ୍ତ ଉପନିଷଦର ବିଷୟରେ ଐକତା ପ୍ରମାଣ କରିଦେଲେ । ସେତେବେଳେ ଏହି ବ୍ରହ୍ମସୂତ୍ର ଉପନିଷଦ ତୁଲ୍ୟ ପ୍ରାମାଣିକ ବୋଲି ସ୍ୱୀକାର କରାଗଲା । ଏହି ବାଦରାୟଣ ଆଚାର୍ଯ୍ୟଙ୍କ ଦ୍ୱାରା ବ୍ୟାସ ନାମରେ ସକଳ ଉପନିଷଦର ସାର ଅତି ନିପୁଣ ପ୍ରକାରରେ ପ୍ରାଞ୍ଜଳ ଭାବରେ ଭଗବଦ୍ ଗୀତାରେ ବ୍ୟାଖ୍ୟା ଦିଆଯାଇଅଛି । ସେଥିପାଇଁ ପରିଶେଷରେ ଉପନିଷଦ, ବ୍ରହ୍ମସୂତ୍ର ଓ ଭଗବଦ୍‌ଗୀତା ଏହି ତିନୋଟିକୁ 'ପ୍ରସ୍ଥାନ ତ୍ରୟୀ' ନାମରେ ବେଦାନ୍ତର ମୁଖ୍ୟ ପ୍ରାମାଣିକ ଗ୍ରନ୍ଥ ବୋଲି ସ୍ୱୀକାର କରାଗଲା ।

କେତକ ପଣ୍ଡିତଙ୍କ ମତରେ ସମ୍ପୂର୍ଣ୍ଣ ମୂଳ ମହାଭାରତ ମଧ୍ଯ ବେଦବ୍ୟାସଙ୍କ କୃତ ନୁହେଁ । ମୂଳ ମହାଭାରତ ରଚନାକାରୀ ମହର୍ଷି ବେଦବ୍ୟାସ ସର୍ବ ପ୍ରଥମେ ତାଙ୍କର ପାଞ୍ଚ ଜଣ ଶିଷ୍ୟ—ସୁମନ୍ତୁ, ଜୈମିନି, ପୈଲ, ଶୁକ ଓ ବୈଶମ୍ପାୟନଙ୍କୁ ଶିକ୍ଷାଦାନ ଦେଇଥିଲେ । ଏମାନେ ଶିକ୍ଷା-ଲାଭ କରି ଭାରତ ସଂହିତା ମାନ ରଚନା କଲେ । ଭାଗବତ ଅନୁସାରେ ବ୍ୟାସଦେବ ବୈଦିକ ସାହିତ୍ୟର ରକ୍ଷା ନିମିତ୍ତ ପୈଲଙ୍କୁ ଋଗ୍‌ବେଦ, କବି ଜୈମିନିଙ୍କୁ ସାମବେଦ, ବୈଶମ୍ପାୟନଙ୍କୁ ଯଜୁର୍ବେଦ ଓ 'ସୁମନ୍ତୁ' ମୁନିଙ୍କୁ ଅଥର୍ବ ବେଦ ଶିକ୍ଷା ଦେଇଥିଲେ ।

## ମହାଭାରତର ଆଦ୍ୟ ରଚନା—

କଥିତ ଅଛି ବ୍ୟାସଦେବ ପ୍ରଥମେ ଚବିଶଗୋଟି ଶ୍ଳୋକରେ 'ଭାରତ ସଂହିତା' ରଚନା କରିଥିଲେ । ଏବଂ ନିଜ ପୁତ୍ର ଶୁକଦେବଙ୍କୁ ତାହା ପଢ଼ାଇଥିଲେ । ❊ (ଭାରତର ଭୂତପୂର୍ବ ପ୍ରଧାନ ମନ୍ତ୍ରୀ ଶ୍ରୀ ଜବାହର ଲାଲ ନେହେରୁ) ମହାଭାରତର ସମସ୍ତ ଶିକ୍ଷା ଗୋଟିଏ ବାକ୍ୟରେ ବ୍ୟକ୍ତ କରାଯାଇଛି, ବୋଲି ଉଲ୍ଲେଖ କରିଛନ୍ତି "ଅନ୍ୟ ପ୍ରତି ତୁ ସେପରି କରୁନା କରିବୁନି । ଯାହା ତୋ ପ୍ରତି ତୁ କରିବା ନାପସନ୍ଦ କରିବୁ ।" ❊ ମହର୍ଷି କୃଷ୍ଣ ଦ୍ୱୈପାୟନ ମହାଭାରତରେ କୁରୁ ବଂଶର ବିସ୍ତାର, ଗାନ୍ଧାରୀଙ୍କ ଧର୍ମ ଶୀଳତା, ବିଦୁରଙ୍କ ପ୍ରଜ୍ଞା, କୁନ୍ତୀଙ୍କ ଧୈର୍ଯ୍ୟ, କୃଷ୍ଣଙ୍କର ମହାତ୍ମ୍ୟ, ପାଣ୍ଡବଗଣଙ୍କର ସତ୍ୟ ପରାୟଣତା ଓ ଧୃତରାଷ୍ଟ୍ରଙ୍କର ଦୁଷ୍ଟତା ବର୍ଣ୍ଣନା କରି ପ୍ରଥମେ ୨୪୦୦୦ (ଚତୁର୍ବିଂଶତି ସହସ୍ର) ଶ୍ଳୋକରେ ଭାରତ ସଂହିତା ରଚନା କରିଥିଲେ । ପଣ୍ଡିତମାନେ ଉପାଖ୍ୟାନ ଶୂନ୍ୟ ଚତୁର୍ବିଂଶତି ସହସ୍ର ଶ୍ଳୋକକୁ ଭାରତ ବୋଲି କହନ୍ତି ।

ମହର୍ଷି ବେଦବ୍ୟାସ ଏହି ଗ୍ରନ୍ଥକୁ ପରିବର୍ଦ୍ଧିତ କରି ଷାଠିଏ ଲକ୍ଷ ଶ୍ଳୋକରେ ଏହାକୁ ପ୍ରକାଶ କଲେ ।

"ତତୋ ଅନ୍ୟେଭ୍ୟୋଽନୁ ରୂପେଭ୍ୟଃ ଶିଷ୍ୟେଭ୍ୟଃ ପ୍ରଦଦୌ ବିଭୁଃ ।
ଷଷ୍ଟିଂ ଶତ ସହସ୍ରାଣି ଚକାରନ୍ୟାଂ ସ ସଂହିତାମ (୧୦୫)
(ମହାଭାରତ ଆଦିପର୍ବ)

ନାରଦ ଦେବଲୋକରେ ୩୦ ଲକ୍ଷ, ଅସିତ ପିତୃଲୋକରେ ୧୫ ଲକ୍ଷ, ଶୁକଦେବ ଗନ୍ଧର୍ବ ଲୋକରେ ୧୪ ଲକ୍ଷ ଓ ବ୍ୟାସଙ୍କ ନିର୍ଦ୍ଦେଶରେ ବୈଶମ୍ପାୟନ ମର୍ତ୍ତ୍ୟ ଲୋକରେ ଏକ ଲକ୍ଷ ଶ୍ଳୋକରେ ମହାଭାରତ ପ୍ରକାଶ କଲେ । ତେଣୁ ବର୍ତ୍ତମାନ ଆମେ ଯେଉଁ ମହାଭାରତ ଦେଖୁଅଛୁ ତାହା ମୂଳ ମହାଭାରତ ରଚନାକାରୀ କୃଷ୍ଣ ଦ୍ୱୈପାୟନଙ୍କର ମୁଖ ନିସୃତ ନୁହେଁ । ପୌରାଣିକ, ସୂତ କୁଳ ସୂତ ଉଗ୍ରଶ୍ରବା ନୈମିଷ୍ୟାରଣ୍ୟରେ ଶୌନକାଦି ଋଷିଗଣଙ୍କୁ ଯାହା କହିଛନ୍ତି । ସେ ବିଷୟ ଉଲ୍ଲେଖ ଅଛି । ନିଜେ ଉଗ୍ରଶ୍ରବା ମଧ୍ୟ ମହାଭାରତ କହିଲା ବେଳେ କହିଛନ୍ତି--

"ପାଣ୍ଡବବଂଶଙ୍କ ପ୍ରପୌତ୍ର ଜନ୍ମେଜୟ ବୈଶମ୍ପାୟନ ମହର୍ଷିଙ୍କଠାରୁ ଯେଉଁ ମହାଭାରତ ଆଖ୍ୟାନ ଶୁଣିଥିଲେ ସେ ତାଙ୍କର ପିତାଙ୍କ ନିକଟରୁ ଶିକ୍ଷା କରିଛନ୍ତି ଏବଂ ବର୍ତ୍ତମାନ ସେହି ଆଖ୍ୟାନ ବ୍ୟାଖ୍ୟା କରୁଛନ୍ତି । ବର୍ତ୍ତମାନ ଆମେ ସେହି ଆଖ୍ୟାନ ମଧ୍ୟ ଖୋଦ ଉଗ୍ରଶ୍ରବାଙ୍କ ନିକଟରୁ କିମ୍ବା ତାଙ୍କର ରଚିତ କୌଣସି ଗ୍ରନ୍ଥରୁ ମଧ୍ୟ ପାଇ ପାରୁ ନାହୁଁ ।"

## ବେଦବ୍ୟାସ ଓ ଗଣେଶ--

ଉଗ୍ରଶ୍ରବା ମହାଭାରତ ଆଖ୍ୟାନ କଲାବେଳେ କହିଛନ୍ତି ଯେ ବ୍ରହ୍ମା ଦେବର୍ଷି ବେଦବ୍ୟାସଙ୍କୁ ମହାଭାରତ ରଚନାବେଳେ ଗଣେଶଙ୍କୁ ସ୍ମରଣ କରିବାକୁ ଉପଦେଶ ଦେଇଛନ୍ତି । ସ୍ମରଣ କଲାମାତ୍ରେ ବିଘ୍ନ ବିନାଶକ ଗଣନାୟକ ଗୋଟିଏ ସର୍ତ୍ତରେ ମହାଭାରତ ଲେଖକ ହେବା ପାଇଁ ରାଜି ହୋଇଛନ୍ତି ।

"ଶ୍ରୁତ୍ୱୈତଦ୍ ପ୍ରାହ ବିଘ୍ନେଶୋ ଯଦି ମେ ଲେଖନୀ କ୍ଷଣମ୍ ।
ଲିଖତୋ ନାବତିଷ୍ଠେତ ତଦା ସ୍ୟାଂ ଲେଖକୋ ହ୍ୟହମ୍ । ୭୮ ॥
(ମହାଭାରତ ଆଦି ପର୍ବ)

---

* ଓଡ଼ିଆ ସାହିତ୍ୟର ଇତିହାସ--୨ୟ ଭାଗ--ଡଃ ବଂଶୀଧର ମହାନ୍ତି
* ଭାରତ ଆବିଷ୍କାର--ଶ୍ରୀ ଜବାହରଲାଲ ନେହେରୁ
* ମହାଭାରତ ଆଦି ପର୍ବ ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଗଣେଶ କହୁଛନ୍ତି, "ଆମ୍ଭେ ଲେଖିବାକୁ ଆରମ୍ଭ କଲେ ଆମ୍ଭର ଲେଖଣୀ ଯେବେ କ୍ଷଣକାଳ ଅବସ୍ଥିତ ନକରିବ, ତେବେ ଆମ୍ଭେ ଲେଖକ ହୋଇ ପାରିବୁ ।" ବ୍ୟାସ କହୁଛନ୍ତି, "ଆପଣ ମଧ୍ୟ ଅର୍ଥ ନବୋଧ ନକରି ଲେଖିବେ ନାହିଁ ।" ମହର୍ଷି ଦ୍ୱୈପାୟନ ଗ୍ରନ୍ଥଗ୍ରନ୍ଥି (ବ୍ୟାସକୂଟ) ଏପରି ଲେଖିଲେଯେ ସର୍ବଜ୍ଞ ଗଣେଶଙ୍କୁ ମଧ୍ୟ ଦଣ୍ଡେ ବିଚାରିବାକୁ ପଡୁଥିଲା । ଗଣେଶଙ୍କୁ ଦଣ୍ଡେ ବିଚାରିଲା ବେଳକୁ ବ୍ୟାସ ପୁଣି ବହୁତ ଶ୍ଳୋକ ରଚନା କରି ନେଉଥିଲେ । ମହର୍ଷି କୃଷ୍ଣ ଦ୍ୱୈପାୟନ ପ୍ରତିଜ୍ଞା ପୂର୍ବକ କହୁଛନ୍ତି—

"ଅଷ୍ଟୌ ଶ୍ଳୋକ ସହସ୍ରାଣି ଅଷ୍ଟୌ ଶ୍ଳୋକ ଶତାନିଚ ।
ଅହଂ ବେଦ୍ମି ଶୁକୋ ବେତ୍ତି ସଞ୍ଜୟୋ ବେତ୍ତି ବାନବା" ॥୮୧॥
(ମହାଭାରତ ଆଦିପର୍ବ)

ଏହି ଗ୍ରନ୍ଥରେ ୮୮୦୦ ଶ୍ଳୋକ ଅଛି, ଯାହାର ଅର୍ଥକୁ କେବଳ ସେ ଓ ଶୁକ ଜାଣନ୍ତି, ସଞ୍ଜୟ ଜାଣନ୍ତି କି ନା ସନ୍ଦେହ ।

ମହାଭାରତ ଲେଖିଲା ବେଳେ ଆମେ ଜାଣୁ କୌଣସି ବିଷୟ ଲିଖିତ ଆକାରରେ ନରହି ଗୁରୁଶିଷ୍ୟ ପରମ୍ପରାରେ ଭାଷ୍ୟ ମାଧ୍ୟମରେ ଶିକ୍ଷା ଦିଆ ହେଉଥିଲା । ଶିଷ୍ୟମାନେ ଶୁଣି ଶୁଣି ମନେ ରଖିବାରୁ ତାର ନାମ ହେଲା ସ୍ମୃତି । ଶାସ୍ତ୍ରକାର ରଚନା କରି ଶିଷ୍ୟ, ତସ୍ୟ ଶିଷ୍ୟ, ତସ୍ୟ ଶିଷ୍ୟ ପ୍ରଣାଳୀରେ ସମାଜରେ ବିସ୍ତାର କରନ୍ତି । ତେଣୁ କୃଷ୍ଣଦ୍ୱୈପାୟନ ବେଦବ୍ୟାସଙ୍କ ମୂଳ ମହାଭାରତ ମିଳିବା ଦୁଷ୍ପ୍ରାପ୍ୟ ।

## ମହାଭାରତ ରଚନାକାଳ—

ବର୍ତ୍ତମାନ ଯେଉଁ ସମ୍ପୂର୍ଣ୍ଣ ମହାଭାରତ ଦେଖୁଛନ୍ତି ତାହା ବେଦବ୍ୟାସଙ୍କ କୃତ ନୁହେଁ ବୋଲି କେତେକ କହନ୍ତି । ମୂଳ ମହାଭାରତ ଯୁଗର ବହୁପରେ ରଚନା କରାଯାଇ ପରେ ପରେ କେତେକ ବିଷୟ ଅନ୍ୟ ସହ ସଂଯୋଗ କରାଯାଇଛି । ଡଃ ମାୟାଧର ମାନସିଂହ କହୁଛନ୍ତି ମହାଭାରତରେ ଆଦ୍ୟ ରଚନା ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ ଏବଂ ଏହାର ଶେଷ ରଚନା ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ ❋ସେଥିମଧ୍ୟରେ ଗୀତା ରଚନା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଆରମ୍ଭ ହୋଇ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଶେଷ ହୋଇଛି ।

ବିଦ୍ୱାନ ସି. ଲାସେନ (C. Lassen) ଙ୍କ ମତରେ ମହର୍ଷି ବେଦବ୍ୟାସଙ୍କ ମହାଭାରତର ବିଷୟ ପର୍ଯ୍ୟାପ୍ତ ଖ୍ରୀଷ୍ଟପୂର୍ବ ୪୬୦ରୁ ଖ୍ରୀଷ୍ଟୀୟ ୪୦୦ ମଧ୍ୟରେ ରଚିତ ହୋଇଛି । କିନ୍ତୁ ହପ୍‌କିନ୍‌ସନ୍ (Hopkinson) ଙ୍କ ମତରେ ଖ୍ରୀଷ୍ଟପୂର୍ବ ୪୦୦ରୁ ୨୦୦ ମଧ୍ୟରେ ମହାଭାରତର କଥା ଆରମ୍ଭ ହୋଇଥିଲା । ଯେଉଁଥିରେ ପାଣ୍ଡବମାନେ ନାୟକ ଥିଲେ ଏବଂ କୃଷ୍ଣ ନରରୂପୀ ଦେବତା ଭାବରେ ବର୍ଣ୍ଣିତ ହୋଇଥିଲେ । ସେ କହନ୍ତି ଖ୍ରୀଷ୍ଟୀୟ ୨୦୦ରୁ ୪୦୦ ମଧ୍ୟରେ ମହାଭାରତର ଉପକ୍ରମଣିକା ଓ ଅନ୍ୟାନ୍ୟ ଅନେକ ଉପାଖ୍ୟାନ ଗ୍ରନ୍ଥିତ ହେଲା (୧) ଏଡ଼୍ ଘୁସଲଙ୍କରଙ୍କ ମତରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତକରୁ ଖ୍ରୀଷ୍ଟୀୟ ପ୍ରଥମ ଶତକ ମଧ୍ୟରେ ନରରୂପୀ ଶ୍ରୀକୃଷ୍ଣ କୃଷ୍ଣ ଭଗବାନ ରୂପେ ରୂପାୟିତ ହୋଇଛନ୍ତି । ଏହି ସମୟରେ ମୂଳ ମହାଭାରତରେ ଅନେକ ଉପପର୍ବ ଯୁକ୍ତ ହୋଇଛି (୨) ।

## ବିଭିନ୍ନ ଭାଷାରେ ମହାଭାରତ—

ଭାଷାବିତ୍‌ଙ୍କ ମତରେ ଭାରତରେ ପ୍ରଥମେ ଦ୍ରାବିଡ଼ଭାଷା ଏବଂ ଦ୍ରାବିଡ଼ ପରେ ଆର୍ଯ୍ୟ ବା ବୈଦିକ ଭାଷା ପ୍ରଚଳିତ ଥିଲା । ବୈଦିକ ଭାଷା ପରେ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଭାଷା ହେଉ ପ୍ରାନ୍ତୀୟ ଭାଷାର ସୃଷ୍ଟି । ଭାଷାବିତ୍ ଜନ ବିମ୍‌ସ୍‌ଙ୍କ ମତରେ (୩) ଖ୍ରୀଷ୍ଟୀୟ ଏକାଦଶ ଶତକରେ ଗୁଜୁରାଟୀ, ପଞ୍ଜାବୀ ଓ ହିନ୍ଦୀ, ଦ୍ୱାଦଶ, ତ୍ରୟୋଦଶ ଶତକରେ ମରାଠୀ ଓ ଚତୁର୍ଦ୍ଦଶ ଶତକରେ ଓଡ଼ିଆ ଭାଷା ପ୍ରାକୃତ ଭାଷାଠାରୁ ସ୍ୱାତନ୍ତ୍ର୍ୟ ଲାଭକଲା ।

ସର୍ବ ପ୍ରଥମେ ତେଲୁଗୁ ସାହିତ୍ୟରେ ନାନ୍ନୟା ଭଟ୍ଟ ସଂସ୍କୃତ ମହାଭାରତ ଅବଲମ୍ବନରେ ମହାଭାରତ ରଚନା ଆରମ୍ଭ କରିଥିଲେ । ଚାଲୁକ୍ୟ ରାଜା ଚନ୍ଦ୍ରବଂଶୀ କୌରବ ବଂଶଧର ରାଜରାଜ ନରେନ୍ଦ୍ର (ଖ୍ରୀ ୧୦୨୨-୬୩) ରାଜମହେନ୍ଦ୍ରୀରେ ରାଜତ୍ୱ କରୁଥିଲେ । କବି ନାନ୍ନୟ ତାଙ୍କର ରାଜକବି ଥିଲେ । ତେଲୁଗୁ ସାହିତ୍ୟର ଆଦିକବି ନାନ୍ନୟ ଭଟ୍ଟ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ମହାଭାରତ ରଚନା କରିଥିଲେ ମଧ୍ୟ ତାହା ଥିଲା, କେବଳ ଭାବାନୁବାଦ (୪) । ପରବର୍ତ୍ତୀ କାଳରେ ତିକ୍‌କଣ ଓ ଏରନ୍ନା ବୁଦ୍ଧି ତେଲୁଗୁ ଭାଷାରେ ମହାଭାରତ (ଖ୍ରୀ ୧୨୨୦ରୁ ୧୩୬୦) ମଧ୍ୟରେ ରଚନା କରିଛନ୍ତି ।

---

* ଗୀତା ମହାତ୍ମ୍ୟ— ଡଃ ମାୟାଧର ମାନସିଂହ

ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ( ଖ୍ରୀ ୯୪୧ ) ରେ କନ୍ନଡ଼ ଭାଷାରେ ମହାଭାରତ ରଚନା କରିଥିଲେ 'ପମ୍ପା' । ସେ ପ୍ରଥମେ ମହାଭାରତର କଥାବସ୍ତୁ ଅବଲମ୍ବନରେ 'ବିକ୍ରମାର୍ଜ୍ଜୁନ ବିଜୟମ୍' ଗ୍ରନ୍ଥ ରଚନା କରିଥିଲେ । ଏହା 'ପମ୍ପା ମହାଭାରତ' ନାମରେ ପରିଚିତ । ଏହି 'ପମ୍ପା' ଶବ୍ଦରୁ ଓଡ଼ିଆ ଭାଷାର 'ଫମ୍ପା' ଶବ୍ଦ ଆସିଥିବା ସମ୍ଭବ । 'ପମ୍ପା' ଅର୍ଥ ଖାଲି ବା ପୋଲ । ପମ୍ପା ମହାଭାରତରେ ଅର୍ଜ୍ଜୁନ ନାୟକ ଭାବେ ଗୃହୀତ । ତେଣୁ କନ୍ନଡ଼ ଭାଷୀ ଅଞ୍ଚଳ ପ୍ରଥମରୁ ସମ୍ପୂର୍ଣ୍ଣ ମହାଭାରତର ପାଠ କରିବାର ସୁଯୋଗ ପାଇ ନଥିଲେ । ଏହି ଭାଷାରେ ସପ୍ତଦଶ ଶତାବ୍ଦୀରେ କବି ନାରପାପ୍ପା ଏବଂ ତିମନ୍ନାଙ୍କ ଦ୍ୱାରା ସମ୍ପୂର୍ଣ୍ଣ ମହାଭାରତ ରଚିତ ହୋଇଛି ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ମାଲୟାଲମ୍ ସାହିତ୍ୟରେ କବି ଟି. ରାମାନୁଜ ଏଝୁତାଚ୍ଛନ (Ezhuttachan) ଏବଂ ଏଲୁତ୍ତକ୍କାନ (Eluttccan) ଉଭୟ ମହାଭାରତ ରଚନା କରିଛନ୍ତି । ଏହି ଶତାବ୍ଦୀରେ କବି ମୁକ୍ତେଶ୍ୱର ମହାରାଷ୍ଟ୍ରୀୟ ବା ମରାଠୀ ସାହିତ୍ୟରେ ମହାଭାରତ ପ୍ରଣୟନ କରିଥିଲେ । ଷୋଡ଼ଶ ଶତାବ୍ଦୀର କବି ରାମ ସରସ୍ୱତୀ ଆସାମର ରାଜା ନରନାରାୟଣଙ୍କ ପୃଷ୍ଟପୋଷକତାରେ ମହାଭାରତ ରଚନା କରିଥିଲେ ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ବଙ୍ଗ ସାହିତ୍ୟର ବ୍ୟାସଦେବ କାଶୀରାମ ମହାଭାରତର ବିରାଟ ପର୍ବ ପର୍ଯ୍ୟନ୍ତ ରଚନା କରି ଇହଲୀଳା ସମ୍ବରଣ କରିଥିଲେ । କାଶୀରାମଙ୍କ ପୁତ୍ରର ନନ୍ଦରାମ ମହାଭାରତର ବାକି ଅଂଶତକ ପୂରଣ କରିଥିଲେ । ସାରଳା ଦାସଙ୍କ ମହାଭାରତ ବଙ୍ଗ ଦେଶରେ ଏକ ଶତାବ୍ଦୀ ଧରି ବ୍ୟାସ ବ୍ରାହ୍ମଣଙ୍କ ଦ୍ୱାରା ପ୍ରଚ୍ଛରିତ ହେବାପରେ ମେଦନୀ ପୁର ରାଜାଙ୍କ ପୃଷ୍ଟପୋଷକତାରେ କାଶୀରାମ ବଙ୍ଗଭାଷାରେ

---

(୧) ଓଡ଼ିଆ ସାହିତ୍ୟର ଇତିହାସ—୨ୟ ଭାଗ—ଡଃ ବଂଶୀଧର ମହାନ୍ତି ।

(2) Studies in the Epics and Purans-- A. D. Pasalkar.

(୩) ସାରଳା ସାହିତ୍ୟ ପରିକ୍ରମା— ସୁରେନ୍ଦ୍ର କୁମାର ମହାରଣା

(୪) ସାରଳା ସାହିତ୍ୟ ସମୀକ୍ଷା— ସାରଳା ସାହିତ୍ୟ ସଂସଦ, କଟକ
( ସାରଳା ସାହିତ୍ୟର କାଳ ଓ କଳା— ଶ୍ରୀ ପଠାଣି ପଟ୍ଟନାୟକ )

ମହାଭାରତ ରଚନା କରିଥିଲେ । ସେତେବେଳେ ମେଦିନୀପୁର ସମ୍ପୂର୍ଣ୍ଣ ଭାବରେ ଓଡ଼ିଶା ରାଜାଙ୍କ ଶାସିତ ଅଞ୍ଚଳ ଥିଲା ଏବଂ କାଶୀରାମ ନିଜେ ଶ୍ରୀକ୍ଷେତ୍ରରେ ବହୁକାଳ ଅବସ୍ଥାନ କରିଥିଲେ । ଏହି କାରଣରୁ କାଶୀରାମ ଓଡ଼ିଆ ଭାଷାର ସାରଳା ମହାଭାରତ ଦ୍ୱାରା ପ୍ରଭାବିତ ହୋଇ ବଙ୍ଗ ଭାଷାରେ ମହା-ଭାରତ ରଚନା କରିଛନ୍ତି । ବିଜୟ ଚନ୍ଦ୍ର ମଜୁମଦାର କହିଛନ୍ତି—
"It is very remarkable that this oriya poet acguired celebrity even in Bengal and his Mahabharata was introduced in Bengali translation not later than the early part of the 16th Century"—(Typical Selectio.ıs of Oriya Literature-Vol I)

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ (ଖ୍ରୀ ୧୭୪୮)ରେ ପଞ୍ଜାବୀ କବି କୃଷ୍ଣ ଲାଲ ପ୍ରଥମେ ପଞ୍ଜାବୀ ଭାଷାରେ ମହାଭାରତ ରଚନା କରିଥିଲେ । ହିନ୍ଦୀ ସାହିତ୍ୟରେ ସର୍ବଶେଷରେ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ କବି ଗୋକୁଳ ନାଥଙ୍କ ଦ୍ୱାରା ହିନ୍ଦୀ ଭାଷାରେ ମହାଭାରତ ଅନୁଦିତ ହୋଇଥିଲା । ହିନ୍ଦୀ ସାହିତ୍ୟରେ ହିନ୍ଦୀ ମହାଭାରତକୁ ଏତେ ଦୀର୍ଘ ଦିନ ଅପେକ୍ଷା କରିବାର କାରଣ ହେଉଛି ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ମହାଭାରତ ଅପେକ୍ଷା ତୁଳସୀ ଦାସଙ୍କ ରାମ ଚରିତ ମାନସ ଅଧିକ ଭାବେ ଆଦୃତ ହେବ ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ (ଖ୍ରୀ ୧୪୬୫)ରେ ମହାକବି ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦି ଯୁଗରେ ସମ୍ପୂର୍ଣ୍ଣ ମହାଭାରତ ରଚନା କରି ଓଡ଼ିଆ ଭାଷାକୁ ସମୃଦ୍ଧ କରିଛନ୍ତି । ସାରଳା ମହାଭାରତ ଗଜପତି କପିଳେନ୍ଦ୍ର ଦେବ (୧୪୩୫-୧୪୬୭) ଓ ଗଜପତି ପୁରୁଷୋତ୍ତମ ଦେବଙ୍କ (୧୪୬୭-୧୪୯୭) ଙ୍କ ରାଜତ୍ୱ ସମୟରେ ରଚିତ ହୋଇଛି । *ସାରଳା ଦାସ ସଂସ୍କୃତ ମହାଭାରତକୁ ସମ୍ପୂର୍ଣ୍ଣ ଅନୁବାଦନ କରି ନିଜ କଳ୍ପନାରୁ ବହୁ ନୂତନ ଆଖ୍ୟାୟିକା ସଂଯୋଗ କରି ଓଡ଼ିଶାର ଇତିହାସ ଏବଂ ଭୌଗଳିକ ଚିତ୍ର ପ୍ରଦାନ କରିଛନ୍ତି ।

---

* ସାରଳା ସାହିତ୍ୟର ଐତିହାସିକ ଚିତ୍ର— ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହି ପୃ ୩

ବେଦବ୍ୟାସ କୃତ ମହାଭାରତର ଦୁଇଟି ବିଷୟ 'ଭଗବତଗୀତା' ଓ ଶକୁନ୍ତଳା ଉପାଖ୍ୟାନ ଚାର୍ଲସ ଉଇଲକିନସଙ୍କ ଦ୍ୱାରା ଯଥା କ୍ରମେ ଖ୍ରୀ୧୭୮୫ ଓ ଖ୍ରୀ ୧୭୯୫ରେ ଇଂରାଜୀରେ ଅନୁଦିତ ହୋଇଥିଲା । ସୁପ୍ରସିଦ୍ଧ ଐତିହାସିକ ଓ ପାଶ୍ଚାତ୍ୟ ପଣ୍ଡିତ ସି. ଲସେନ (C. Lassen) (ଖ୍ରୀ ୧୮୩୭) ଏ. ଓ୍ୱେବର (A. Weber) (୧୮୫୨) ସୋରେନ ସେନ (Soren Sen) (୧୮୮୩) ଏବଂ ଏଲ୍ ଏ.ଲଜ୍ଓ୍ୱିଜ୍ (L. A. Luduzing) (୧୮୮୪) ଙ୍କର ମହାଭାରତ ସମ୍ବନ୍ଧୀୟ ଆଲୋଚନା ପ୍ରକାଶ କରିଥିଲେ । ସଂସ୍କୃତ ମହାଭାରତର ନଳ ଦମୟନ୍ତୀ ଆଖ୍ୟାନ ପାଶ୍ଚାତ୍ୟ ମନୀଷୀ ବପ୍ (Bopp)ଙ୍କ ଦ୍ୱାରା ଖ୍ରୀ ୧୮୧୯ରେ ଅନୁଦିତ ହୋଇଥିଲା ।

ସଂସ୍କୃତ ମହାଭାରତର ଶୁଦ୍ଧ ସଂସ୍କରଣ ଡ଼ଃ ସୁକ୍‌ଥଙ୍କରଙ୍କ ଦ୍ୱାରା ଖ୍ରୀ ୧୯୨୪ ମସିହାରେ ଆରମ୍ଭ ହୋଇ ୧୯୪୭ ମସିହାରେ ଶେଷ ହୋଇଥିଲା । ଏଥିପାଇଁ ଖ୍ରୀଷ୍ଟୀୟ ଦଶମ ଶତକର କାଶ୍ମୀର ସଂସ୍କୃତ ମହାଭାରତ ଓ ନାନୟ୍ୟ ଭଟ୍ଟଙ୍କର ତେଲୁଗୁ ଅନୁବାଦ ଓ ନେପାଳି ମହାଭାରତର ସାହାଯ୍ୟ ନିଆ ହୋଇଥିଲା ।

## ମହାଭାରତ ଯୁଦ୍ଧର କାଳ—

ମହର୍ଷି ବେଦବ୍ୟାସଙ୍କ ରଚିତ ମହାଭାରତ ଅତି ପ୍ରାଚୀନ ଗ୍ରନ୍ଥ ଯାହାକୁ ମହାଭାରତ ଯୁଦ୍ଧର ସମସାମୟିକ ବୋଲି ଧରାଯାଇପାରେ । ଐତିହାସିକ ମାନେ ଋଗ୍ ବେଦର ସମୟ ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀ ଏବଂ ମହାଭାରତ ଯୁଦ୍ଧ ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀ ବୋଲି ସ୍ଥିର କରନ୍ତି । * ଏ. ଡ଼ି ପୁସଲ୍‌କର ଏହି ସମୟକୁ ମଧ୍ୟ ସ୍ଥିର କରିଛନ୍ତି । ବିଷ୍ଣୁ ପୁରାଣ ଅନୁଯାୟୀ ଯୁଧିଷ୍ଠିରଙ୍କ ରାଜତ୍ୱ କାଳ ଖ୍ରୀଷ୍ଟପୂର୍ବ ୧୪୩୪ ବର୍ଷ । ଶ୍ରୀମଦ ଭାଗବତରେ ଏହି ମତକୁ ସମର୍ଥନ କରାଯାଇଛି । କିନ୍ତୁ ବାୟୁପୁରାଣ ଓ ମତ୍ସ୍ୟ-ପୁରାଣ ମତରେ ମହାଭାରତ ଯୁଦ୍ଧ ଖ୍ରୀଷ୍ଟପୂର୍ବ ୧୪୭୬ ବୋଲି ସ୍ଥିର ହୋଇଛି ।

ମାଦଳା ପଞ୍ଜିରୁ ଜଣାଯାଏ ଯୁଧିଷ୍ଠିର ଖ୍ରୀଷ୍ଟପୂର୍ବ ୩୧୦୧ ଠାରୁ ୩୦୮୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, କିନ୍ତୁ ପାଶ୍ଚାତ୍ୟ ପଣ୍ଡିତ କୋଲବ୍ରୁକ୍, ଉଇଲସନ ଓ ଏଲଫିନ ଷ୍ଟୋନ ଖ୍ରୀଷ୍ଟପୂର୍ବ ଚତୁର୍ଦ୍ଦଶ ଶତାବ୍ଦୀରେ ମହାଭାରତ ଯୁଦ୍ଧ ସଂଘଟିତ ହୋଇଥିଲା ବୋଲି କହନ୍ତି । ଐତିହାସିକ ଜଗବନ୍ଧୁ ସିଂହଙ୍କ

ମତରେ ଏହା ଖ୍ରୀଷ୍ଟପୂର୍ବ ୧୬୧୪ରେ ସଂଗଠିତ ହୋଇଥିଲା ବେଳେ ଡଃ ହରେକୃଷ୍ଣ ମହତାବ ମହାଭାରତ ଯୁଦ୍ଧ ଖ୍ରୀଷ୍ଟପୂର୍ବ ଏକାଦଶ ଶତାବ୍ଦୀ ବୋଲି ଲେଖିଛନ୍ତି । ଗବେଷକ ମାନେ ସାଧାରଣତଃ ଖ୍ରୀଷ୍ଟପୂର୍ବ ୧୪୩୦ ବୋଲି ଧରିଥାନ୍ତି । ମହର୍ଷି ଦ୍ୱୈପାୟନ କୃଷ୍ଣ ଏହି ସମୟ ଅର୍ଥାତ୍ ସମସାମୟିକ କାଳ ଖ୍ରୀଷ୍ଟପୂର୍ବ ୧୪୩୦ରେ ମହାଭାରତ ରଚନା କରିଥିଲେ ବୋଲି ଧରାଯାଏ ।

## ହରିବଂଶ ପୁରାଣ—

‘ପ୍ରାଚୀନ ଉତ୍କଳର’ ଲେଖକ ଜଗବନ୍ଧୁ ସିଂହ ପୃଥିବୀ ଇତିହାସରେ ଲେଖାଥିବା ମତ ଉଦ୍ଧାର କରି ଦର୍ଶାଇଛନ୍ତି ଶ୍ରୀକୃଷ୍ଣଙ୍କ ସ୍ୱର୍ଗଗମନ ସମ୍ବନ୍ଧୀୟ ଶ୍ରୀମଦ୍ ଭାଗବତୋକ୍ତ, ବ୍ରହ୍ମବୈବର୍ତ୍ତୋକ୍ତ, କଳ୍କି ପୁରାଣୋକ୍ତ ମାନ ଆଲୋଚନା କରି କୁରୁ ପାଣ୍ଡବ ଯୁଦ୍ଧ କଳିଯୁଗ ପୂର୍ବରେ ଓ ଦ୍ୱାପର ଯୁଗ ଶେଷରେ ହୋଇଥିବାର ସିଦ୍ଧାନ୍ତ ଗ୍ରହଣ କରିଛନ୍ତି ଏବଂ ପ୍ରଥମେ ରାମାୟଣ ଯୁଗପରେ ମହାଭାରତ ଯୁଗ ଯେଉଁଥିରେ ହରିବଂଶ ମହାଭାରତର ଏକ ଅଂଶ ବୋଲି ଦର୍ଶାଇଛନ୍ତି ।

ମହାଭାରତରେ ବେଦବ୍ୟାସ ରଚନା ଶେଷକଲା ନାରଦଙ୍କ କହନ୍ତି "ଏ ଗ୍ରନ୍ଥ ସମ୍ପୂର୍ଣ୍ଣ ହୋଇ ପାରିଲା ନାହିଁ, ଯେହେତୁ କେବଳ ମହାଭାରତ କୌରବ ଓ ପାଣ୍ଡବଙ୍କ କାହାଣୀରେ ପରିପୂର୍ଣ୍ଣ । ଏହି ସବୁ ଘଟଣାର ଯେ ମୂଳ ଆଧାର ଶ୍ରୀକୃଷ୍ଣଙ୍କ ବିଷୟ ବିଶଦ ଭାବରେ ବର୍ଣ୍ଣନା କରାଯାଇ ପାରିନାହିଁ । ଏହି ଗ୍ରନ୍ଥରେ ତାହାଙ୍କୁ ଉପସ୍ଥାପିତ କରାଯାଇଅଛି କୁରୁ ପାଣ୍ଡବଙ୍କ ଇତିହାସ ବର୍ଣ୍ଣନାରେ ତାଙ୍କର ଯେତିକି ପ୍ରୟୋଜନ ଅଛି, କେବଳ ମାତ୍ର ସେତିକି ତାହା ପୂର୍ଣ୍ଣ ପ୍ରକାଶିତ ବୋଲି କୌଣସି ପ୍ରକାରେ କୁହା ଯାଇ ପାରେନା । ସେ ନେଇ ଗ୍ରନ୍ଥ ରଚନା କରି ଏମନ ପରିତୃପ୍ତି ଲାଭ କରିପାରି ନାହିଁ ।"

ଦେବର୍ଷି ନାରଦ ବେଦବ୍ୟାସଙ୍କୁ ପରାମର୍ଶଦେଲେ ହରିବଂଶ ନାମକ ଏକ ପୁରାଣ ରଚନା କରି ସେଥିରେ କେବଳ ଶ୍ରୀକୃଷ୍ଣଙ୍କ ବିଷୟ ପ୍ରକାଶ କରିବାକୁ ।

ଆଖ୍ୟା ନୈଶ୍ଚାପ୍ୟୁପାଖ୍ୟା ନୈର୍ଗାଥାଭିଃ କଳ୍ପ ଶୁଦ୍ଧିଭିଃ
ପୁରାଣ ସଂହିତାଂ ଚକ୍ରେ ପୁରାଣାର୍ଥ ବିଶାରଦଃ; (୩।୬।୧୫)

( ବିଷ୍ଣୁ ପୁରାଣ )

★ The Vedic Age—P. 197—201

ବ୍ୟାସଦେବ ବିଭିନ୍ନ ଆଖ୍ୟାନ, ଉପାଖ୍ୟାନ ଓ ଗାଥା ପ୍ରଭୃତି ଅବଲମ୍ବନରେ ପୁରାଣ ସଂହିତା ରଚନା କରିଥିଲେ । ମହର୍ଷି ବେଦବ୍ୟାସ ବୋଧହୁଏ ନାରଦଙ୍କ ପରାମର୍ଶରେ ହରିବଂଶ ରଚନା କରିଥିଲେ । ପରବର୍ତ୍ତୀ କାଳରେ ହରିବଂଶ ମହାଭାରତର ଏକ ଅଂଶ ରୂପେ ପରିଗଣିତ ହୋଇଛି । ସେଥିପାଇଁ କେତେକ ସ୍ଥାନରେ ହରିବଂଶ ପୋଥି ପଢ଼ାଯାଏ ମହାଭାରତ ପାଠ ହୋଇ ସାରିବା ପରେ ।

କେତେକ ବିଦ୍ୱାନ୍‌ଙ୍କ ମତରେ ହରିବଂଶ ମହର୍ଷି କୃଷ୍ଣ ଦ୍ୱୈପାୟନଙ୍କ କୃତ ନୁହେଁ । ଏହା ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ରଚନା ବୋଲି ଡଃ ବଂଶୀଧର ମହାନ୍ତି କହିଲେବେଳେ ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ର ଏହାକୁ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବୋଲି ପ୍ରମାଣ କରନ୍ତି, ସେ କାଳିଦାସଙ୍କର ମେଘ ଦୂତ "ମୟୂର ପୁଚ୍ଛ ଦ୍ୱାରା ଉଜ୍ଜ୍ୱଳ ବିଷ୍ଣୁଙ୍କର ଗୋପ ବେଶ ଭଳି, ଇନ୍ଦ୍ରଧନୁ ଶୋଭିତ ମେଘର ସୌନ୍ଦର୍ଯ୍ୟ ହରିବଂଶର ପ୍ରଭାବ କାଳିଦାସଙ୍କ ଉପରେ ପଡି ଥିବାର ପ୍ରମାଣ କରି, ଏହା ବିକ୍ରମାଦିତ୍ୟଙ୍କ ସମୟ ଷଷ୍ଠ ଶତାବ୍ଦୀର ବୋଲି ପ୍ରମାଣ କରିଛନ୍ତି"।

## ଶ୍ରୀମଦ୍ ଭାଗବତ—

ବେଦାର୍ଥ ତତ୍ତ୍ୱ ସହିତ ମହାଭାରତ ପରି ବିଶାଳ ଗ୍ରନ୍ଥ ରଚନା କରିବା ପରେ ମଧ୍ୟ ବେଦବ୍ୟାସ ତୃପ୍ତି ଲାଭ କରି ନଥିଲେ, ତେଣୁ ଶ୍ରୀମଦ୍ ଭାଗବତ ପରି ଅଦ୍ୱିତୀୟ ଭକ୍ତି ଗ୍ରନ୍ଥ ରଚନା କରି ଆତ୍ମାର ପରିତୃପ୍ତି ସାଧନ କରିଥିଲେ । ※ ଏହି ଭାଗବତ ଶ୍ରବଣ କରିବା ଦ୍ୱାରା ଭକ୍ତିର ନିଷ୍କାମ ଜ୍ଞାନ ବୈରାଗ୍ୟ ତାଙ୍କ ପୁତ୍ର ଶୁକଦେବଙ୍କ ଠାରେ ଉଦୟ ହୋଇଥିଲା । ତେଣୁ ଶ୍ରୀମଦ୍ ଭାଗବତରେ ଯୋଗ, ତପ, ସ୍ୱାଧ୍ୟାୟ ଅପେକ୍ଷା ଶ୍ରେଷ୍ଠ ଏବଂ ଭଗବାନଙ୍କ ପ୍ରାପ୍ତିର ଏକମାତ୍ର ଉପାୟ 'ଭକ୍ତି' —

ନ ସାଧୟତି ମାଂ ଯୋଗୋ ନ ସାଂଖ୍ୟ ଧର୍ମ ଉଦ୍ଧବ ।
ନ ସ୍ୱାଧ୍ୟାୟ ସ୍ତପଃ ତ୍ୟାଗୋ ଯଥା ଭକ୍ତି ର୍ମମୋର୍ଜିତା ॥

---

※ "ଯେନ ଶ୍ୟାମଂ ବପୁରତିତରାଂ କାନ୍ତିମାପତ୍ସ୍ୟତେ
ବର୍ହେଣେବ ସ୍ଫୁରିତ ରୁଚିନା ଗୋପ ବେଶସ୍ୟ ବିଷ୍ଣୋଃ"
(ମେଘଦୂତ)

ଭାରତୀୟ ଦର୍ଶନ—ଓଡ଼ିଶା ସାହିତ୍ୟ ଏକାଡେମୀ ।

ବାଙ୍କିଭଗ୍ଚର୍ଯ୍ୟ ଭାଗବତକୁ ମହର୍ଷି ବ୍ୟାସ ଦେବଙ୍କର ସମାଧି ଭାଷା ଅର୍ଥାତ୍ ଭାଗବତର ତତ୍ତ୍ୱମାନଙ୍କୁ ବ୍ୟାସଦେବ ନିଜର ସମାଧି ଦଶାରେ ଅନୁଭବ କରି ରଚନା କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଦ୍ୱାପର ଯୁଗର ମହର୍ଷି କୃଷ୍ଣ ଦ୍ୱୈପାୟନ ଯିଏ ପରେ ମହର୍ଷି ବେଦବ୍ୟାସ ବୋଲି ପରିଚିତ ହେଲେ ସେ ସମସ୍ତ ପୁରାଣ ଲେଖି ନାହାନ୍ତି । ସେ ହୁଏତ ସମସ୍ତ ପୁରାଣ କଥା ଆକାରରେ ନିଜ ଶିଷ୍ୟ ପ୍ରଶିଷ୍ୟ ଆକାରରେ ଶିକ୍ଷା ଦେଇଛନ୍ତି, କିନ୍ତୁ ପରେ ପୁରାଣ ରଚୟିତା ଲେଖକ କବିମାନେ ପଞ୍ଚମ ମନୀଷୀ ବେଦର ବ୍ୟାଖ୍ୟାକାର ବେଦବ୍ୟାସଙ୍କ ନାମରେ ପୁରାଣ ଲେଖି ଉତ୍ସର୍ଗ କରିଛନ୍ତି ।



# ପଞ୍ଚମ ପରିଚ୍ଛେଦ

## ପ୍ରାଚୀନ ସାହିତ୍ୟ-ବେଦ

ପୃଥିବୀର ଆଦିମାନବର ପ୍ରଥମ ଇତିହାସ ବା ସାହିତ୍ୟ ହେଉଛି ବୈଦିକ ସାହିତ୍ୟ । ଭାରତୀୟ ଧର୍ମ ଓ ସଂସ୍କୃତିର ମୂଳ ଉତ୍ସ ହେଉଛି ବେଦ । ବିଦ୍ (ଜ୍ଞାନ) ଧାତୁରୁ ବେଦ ଶବ୍ଦ ନିଷ୍ପନ୍ନ ହୋଇଛି । ବେଦ ଅନନ୍ତ ଜ୍ଞାନର ଅସରନ୍ତି ଭଣ୍ଡାର 'ମନ୍ତ୍ର ବ୍ରାହ୍ମଣାତ୍ମକୋ ବେଦଃ' ବେଦର ଦୁଇଟି ବିଭାଗ ଅଛି —ମନ୍ତ୍ର ଓ ବ୍ରାହ୍ମଣ । 'ମନନାତ୍ ମନ୍ତ୍ରାଃ'—ଅର୍ଥାତ୍ କୌଣସି ଦେବତା ବିଶେଷର ନାମର ସ୍ତୁତିକୁ ମନନ କରାଯିବା ହେଉଛି ମନ୍ତ୍ର । ବ୍ରାହ୍ମଣ ଗ୍ରନ୍ଥରେ ଯଜ୍ଞାନୁଷ୍ଠାନର ବିସ୍ତୃତ ବର୍ଣ୍ଣନା ରହିଛି । ବ୍ରାହ୍ମଣ ଗ୍ରନ୍ଥକୁ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା—ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ । ବ୍ରାହ୍ମଣ ଗ୍ରନ୍ଥ ଗୃହସ୍ଥ ନିମିତ୍ତ ଅତ୍ୟନ୍ତ ଉପାଦେୟ । ଆରଣ୍ୟକ ଗ୍ରନ୍ଥରେ ମହର୍ଷି ବା ବାନପ୍ରସ୍ଥୀମାନଙ୍କ ନିମିତ୍ତ ଯଜ୍ଞ ମହାବ୍ରତ ତଥା ହୋତାଦିର ବର୍ଣ୍ଣନା ଏବଂ ଯଜ୍ଞର ଆଧ୍ୟାତ୍ମିକ ତତ୍ତ୍ୱରେ ସନ୍ନିବେଶିତ । ଉପନିଷଦ୍ ହେଉଛି ବୈଦିକ ସାହିତ୍ୟର ଅନ୍ତିମ ଭାଗ ତେଣୁ ବେଦର ଅନ୍ତରେ ଏହା ସ୍ଥାନ କରାଯାଇ ଥିବାରୁ ଏହାକୁ ବେଦାନ୍ତ ବା ଉପନିଷଦ୍ କହନ୍ତି । ମାନବ ଜନ୍ମ ଜରାମୃତ୍ୟୁ ଆଦି ସଂସାର ପ୍ରପଞ୍ଚରୁ ମୁକ୍ତି ଲାଭ କରି ଅନନ୍ତ ଅକ୍ଷୟ ସୁଖ ଶାନ୍ତି ଲାଭ କରିବା ବିଷୟ ସମ୍ବଳିତ ଆଧ୍ୟାତ୍ମ ଶାସ୍ତ୍ର ହେଉଛି ଉପନିଷଦ୍ । ଉପନିଷଦରେ ଜୀବ ଓ ପରମାତ୍ମାଙ୍କ ସ୍ୱରୂପ ବିଷୟକ ଗୂଢ଼ ସମସ୍ୟାମାନ ସନ୍ନିବେଶିତ ।

ମନ୍ତ୍ର ସମୁଦାୟକୁ ସଂହିତା କୁହାଯାଏ । ସଂହିତା ଚାରିଗୋଟି— ଋଗବେଦ ସଂହିତା, ସାମବେଦ ସଂହିତା, ଯଜୁର୍ବେଦ ସଂହିତା ଓ ଅଥର୍ବ ବେଦ ସଂହିତା । ବେଦକୁ ବ୍ୟାଖ୍ୟା କରିଥିବାରୁ ଆର୍ଯ୍ୟଋଷି କୃଷ୍ଣ-ଦ୍ୱୈପାୟନଙ୍କ ନାମ ହୋଇଥିଲା ବେଦବ୍ୟାସ । କିନ୍ତୁ ସେହି ମହର୍ଷି ବେଦ-ବ୍ୟାସ ହିଁ ଯଜ୍ଞର ଆବଶ୍ୟକତା ଅନୁଯାୟୀ ସଂହିତା ଚତୁଷ୍ଟୟର ସଂକଳନ

କରିଥିଲେ । ବେଦକୁ 'ତ୍ରୟୀ' ରୂପେ ଧରାଯାଏ ଯଥା—ଋକ୍ ଯଜୁଃ ଓ ସାମ * ପାଦଯୁକ୍ତ ଅର୍ଥ ସମନ୍ୱିତ ଛନ୍ଦୋବଦ୍ଧ ମନ୍ତ୍ରକୁ ଋକ୍ ବା ଋଗ୍ କୁହାଯାଏ । ଋଗ୍ ଗୁଡ଼ିକର ବିଭିନ୍ନ ସ୍ୱର ଲହରୀରେ ଗାୟନକୁ 'ସାମ' କୁହାଯାଏ । ଋଗ୍ ଓ ସାମ ବ୍ୟତିରିକ୍ତ ମନ୍ତ୍ରକୁ 'ଯଜୁଷ୍' କୁହାଯାଏ । କେତେକ ବିଦ୍ୱାନ ବେଦରେ ଗଦ୍ୟ, ପଦ୍ୟ ଓ ଗାନ ବା କର୍ମ ଉପାସନା ଓ ଜ୍ଞାନ କାଣ୍ଡ ଥିବାରୁ ଏହାକୁ 'ବେଦତ୍ରୟୀ' କହନ୍ତି । ଅଥର୍ବ ବେଦରେ ସଂହାରାତ୍ମକ, ରକ୍ଷାତ୍ମକ, ଦୁଷ୍ଟ ପ୍ରେତାଦିଙ୍କର ନିବାରଣ ମନ୍ତ୍ର ପ୍ରଭୃତି ତାନ୍ତ୍ରିକ ମନ୍ତ୍ର ସନ୍ନିବେଶିତ । ଏହାକୁ ଅଥର୍ବାଙ୍ଗିରସଃ ଅଥର୍ବନ ଅଙ୍ଗିରସଙ୍କର ଗୁହ୍ୟ ବିଦ୍ୟା ବୋଲି କୁହାଯାଇଛି । ଋଗ୍ ବେଦର ପୁରୁଷ ସୂକ୍ତରେ ତିନି ବେଦର ଉତ୍ପତ୍ତି ହୋଇଛି ବୋଲି କୁହାଯାଇଛି ।

"ତସ୍ମାତ ଯଜ୍ଞାତ୍ ସର୍ବହୁତଂ ଋଚଃ ସାମାନି ଜଜ୍ଞିରେ ।
ଛନ୍ଦାଂସି ଯଜ୍ଞିରେ ତସ୍ମାଦ୍ ଯଜୁସ୍ତସ୍ମାଦଜାୟତେ" ॥
(ଋଗ୍ ବେଦ ୧୦।୯୦।୯)

ଋଗବେଦର ଏହି ସୂକ୍ତରେ ଅଥର୍ବ ବେଦର ନାମୋଲ୍ଲେଖ ନଥିବାରୁ ଏହାକୁ ସେତେବେଳେ ବେଦର ମର୍ଯ୍ୟାଦା ଦିଆ ହୋଇ ନଥିଲା । କିନ୍ତୁ ପରବର୍ତ୍ତୀ କାଳରେ ବେଦ ମର୍ଯ୍ୟାଦା ଲାଭ କଲା ।

ଯଜ୍ଞାନୁଷ୍ଠାନ ଲାଗି ଚାରିଜଣ ଋତ୍ୱିକ ବ୍ରାହ୍ମଣଙ୍କର ଆବଶ୍ୟକ ଯଥା— ହୋତା, ଉଦଗାତା, ଅଧ୍ୱର୍ଯ୍ୟୁ ଓ ବ୍ରହ୍ମା । ହୋତା ( ଆହ୍ୱାନ କର୍ତ୍ତା ) ଯଜ୍ଞ ସମୟରେ ପ୍ରଶଂସା ଯୁକ୍ତ ମନ୍ତ୍ରଦ୍ୱାରା ଦେବତା ମାନଙ୍କୁ ଆହ୍ୱାନ କରେ । ହୋତ୍ର କାର୍ଯ୍ୟଲାଗି ଆବଶ୍ୟକ ମନ୍ତ୍ର ଋଗ୍ ବେଦରେ ସଂକଳନ କରାଯାଇଛି । ଉଦ୍‌ଗାତ୍ର କର୍ମ (ସ୍ତୁତିଗାନ) ସମ୍ପାଦନ କରେ ଉଦ୍‌ଗାତା, ମନ୍ତ୍ରମାନଙ୍କୁ ବିଭିନ୍ନ ରାଗ ରାଗିଣୀରେ ଉଚ୍ଚସ୍ୱରରେ ଗାଇବା ଉଦ୍‌ଗାତାର କାର୍ଯ୍ୟ । ଏହି କାର୍ଯ୍ୟ ଲାଗି ସାମ-ବେଦର ସଂକଳନ ହୋଇଛି । ଯଜ୍ଞର ବିବିଧ ଅଙ୍ଗ, ଉପାଙ୍ଗ ( ଯଜ୍ଞବେଦି ମାପିବା କାର୍ଯ୍ୟ ପ୍ରଭୃତି ) ଅନୁଷ୍ଠାନ ମାନଙ୍କର ବିଧିବତ୍ ସମ୍ପାଦନା କରିବା

* ଋଚୋଯଜୂଂଷି ଚାନ୍ୟାନି ସାମାନି ବିବିଧାନି ଚ
ଏ ଷଜ୍ଞେୟସ୍ତ୍ରି ବୃଦ ବେଦୋ ଯୋ ବୈଦୈନଂ ସବେଦବିତ୍ ।
୧୧।୨୬୫ (ମନୁସଂହିତା)

ଅଧ୍ୱର୍ଯ୍ୟୁଙ୍କର କାର୍ଯ୍ୟ । ଏହି ଆଧ୍ୱର୍ଯ୍ୟବ କର୍ମଗୁଡ଼ିକ ମନ୍ତ୍ର ଯଜୁର୍ବେଦ ସଂହିତାରେ ସଂକଳନ କରାଯାଇଛି । ବ୍ରହ୍ମା ସକଳ ବେଦର ଜ୍ଞାତା । ସେ ଯଜ୍ଞାନୁଷ୍ଠାନର ଅଙ୍ଗ ଓ ଉପାଙ୍ଗଙ୍କୁ ବିଧିବତ୍ ନିରୀକ୍ଷଣ କରି ଯେପରି କୌଣସି ତ୍ରୁଟି ବାଧା ବିଘ୍ନ ନରହି କାର୍ଯ୍ୟାନୁଷ୍ଠାନ ସମାପ୍ତ ହେବ ତାହା ଦେଖିବା ବ୍ରହ୍ମାଙ୍କର ପ୍ରଧାନ କର୍ତ୍ତବ୍ୟ । ଏହାଙ୍କର ବିଶିଷ୍ଟ ବେଦ ଅଥର୍ବ ବେଦ । ଏହି କ୍ଷେତ୍ରରେ ଭିନ୍ନ ଭିନ୍ନ ଋତ୍ୱିକ ମାନଙ୍କ ପାଇଁ ଭିନ୍ନ ଭିନ୍ନ ସଂହିତାର ସଂକଳନ କରାଯାଇଛି ।

ଭାରତୀୟ ଆସ୍ତିକ ମତରେ ବେଦ ଅପୌରୁଷେୟ (୧) ମୁନିମାନେ ମନ୍ତ୍ର ଦ୍ରଷ୍ଟା ( ଋଷୟଃ ମନ୍ତ୍ର ଦ୍ରଷ୍ଟାରଃ ) । ସମାଧି ଅବସ୍ଥାରେ ମୁନିଋଷି ମାନଙ୍କର ମନରେ ବେଦ ସ୍ୱୟଂ ପ୍ରକାଶ ଲାଭକରିଛି । ଶତପଥ ବ୍ରାହ୍ମଣ ଗ୍ରନ୍ଥରେ ଅଗ୍ନିରୁ ଋଗ୍‌ବେଦ, ବାୟୁରୁ ଯଜୁର୍ବେଦ ଏବଂ ସୂର୍ଯ୍ୟଙ୍କ ଠାରୁ ସାମବେଦ ଉତ୍ପନ୍ନ ହୋଇଥିବା କଥା କୁହାଯାଇଛି । ମନୁସ୍ମୃତିରେ ମଧ୍ୟ ଏହିପରି କୁହାଯାଇଛି—

ଅଗ୍ନି ବାୟୁର ବିଭ୍ୟସ୍ତୁ ତ୍ରୟଂ ବ୍ରହ୍ମ ସନାତନଂ
ଦୁଦୋହ ଯଜ୍ଞସିଦ୍ଧ୍ୟର୍ଥ ମୃଗ୍ ଯଜୁଃ ସାମ ଲକ୍ଷଣଂ । ୧।୨୩।
( ମନୁସଂହିତା )

ଯଜ୍ଞର ଅର୍ଥ ସନାତନ ବେଦ ଏବଂ ବେଦର ତିନି ଲକ୍ଷଣ ବା ଭେଦ ଋକ୍ ଯଜୁଃ ଓ ସାମ । ଏହି ତିନି ବେଦ ଅଗ୍ନି, ବାୟୁ ଓ ରବି ନାମକ ତିନି ଆଦି ପୁରୁଷ ମାନଙ୍କ ମୁଖରୁ ପ୍ରକଟିତ ହୋଇଥିଲେ। )

---

(୧) ପିତୃଦେବ ମନୁଷ୍ୟାଣଂ ବେଦଶ୍ଚକ୍ଷୁଃ ସନାତନମ୍
ଅଶକ୍ୟଞ୍ଚା ପ୍ରମେୟଞ୍ଚ ବେଦ ଶାସ୍ତ୍ର ମିତିସ୍ଥିତିଃ ( ୧୨।୯୪ ) (ମନୁସଂହିତା)
(ବେଦ ପିତୃଦେବ ଓ ମନୁଷ୍ୟ ମାନଙ୍କର ଚକ୍ଷୁ ଏବଂ ସନାତନ ଅଟେ ତଥା ବେଦଶାସ୍ତ୍ର ଅପୌରୁଷେୟ ଓ ଅପ୍ରମେୟ, ଏହା ସ୍ଥିର । )
ନ କଶ୍ଚିଦ୍ ବେଦ କର୍ତ୍ତାଚ ବେଦଂ ସ୍ମୃତା ଚତୁର୍ମୁଖଃ
ତଥୈବ ଧର୍ମାନ୍ ସ୍ମରତି ମନୁଃ କଳ୍ପାନ୍ତରେଽନ୍ତରେ । (୨।୧୬)
(ପରାଶର ସଂହିତା)
(ଅର୍ଥାତ ବେଦକୁ କେହି ରଚନା କରିନାହିଁ, ବେଦର କର୍ତ୍ତା କେହି ନାହିଁ । କଳ୍ପାରମ୍ଭରେ ବ୍ରହ୍ମା ପୂର୍ବକଳ୍ପରେ ଯେପରି ବେଦଥିଲା, ତାହାକୁ ସ୍ମରଣ କରି ଚତୁର୍ମୁଖ ଦ୍ୱାରା ପ୍ରକାଶ କରନ୍ତି ସେହିପରି ପ୍ରତିକଳ୍ପରେ ଯେଉଁ ମନୁ ଉତ୍ପନ୍ନ ହୁଅନ୍ତି ସେ ମଧ୍ୟ ପୂର୍ବକଳ୍ପରେ ଥିବା ଧର୍ମକୁ ସ୍ମରଣ କରନ୍ତି । ସ୍ମରଣ କରିବା ହେତୁ ତାହାକୁ ସ୍ମୃତି କୁହାଯାଏ । )

ମହାଭାଷ୍ୟକାର ପାତଞ୍ଜଳ (ପସ୍ପଶାହ୍ନିକ) ଅନୁସାରେ ଋଗ୍‌-ବେଦର ୨୧ଟି ଶାଖା ଥିଲା ଯଜୁର୍ବେଦର ୧୦୦ଟି ଶାଖା, ସାମବେଦର ୧୦୦୦ ଶାଖା ଓ ଅଥର୍ବ ବେଦର କେବଳ ୯ଟି ଶାଖାଥିଲା । ଏହିପରି ମୋଟରେ ୧୧୩୦ଟି ଶାଖା ଥିଲା । କିନ୍ତୁ ବର୍ତ୍ତମାନ ଦଶ ବାରଟିରୁ ଅଧିକ ଶାଖା ମିଳୁ ନାହିଁ । ଚାରି ବେଦର ଉପବେଦ ଯଥା— ଋଗ୍‌ବେଦର, ଅର୍ଥ ବେଦ, ଯଜୁର୍ବେଦର ଧନୁର୍ବେଦ ସାମବେଦର ଉପବେଦ ଗାନ୍ଧର୍ବବେଦ ଓ ଅଥର୍ବବେଦର ଉପବେଦ ଆୟୁର୍ବେଦ । ଜ୍ୟୋତିର୍ବେଦ ତନ୍ତ୍ରବେଦ ଏହାର ଅଧୀନ । (୨)

## ଋଗ୍‌ବେଦ—

ସାୟଣାଚାର୍ଯ୍ୟ କୃତ 'ଋଗ୍‌ବେଦ ଭାଷ୍ୟ ଭୂମିକାରେ ଋଗ୍‌ବେଦର ପ୍ରାଧାନ୍ୟ ଦୃଢ଼ଭାବେ ପ୍ରତିପାଦିତ ହୋଇଛି । ମହର୍ଷି ମନୁ କହିଛନ୍ତି ସାମ-ବେଦର ଧ୍ୱନିଥାଇ ଋଗ୍‌ବେଦ କଦାପି ପଢ଼ିବ ନାହିଁ । (୩) ଋଗ୍‌ବେଦର ସଂହିତା ସମସ୍ତ ସଂହିତା ଙ୍କ ମଧ୍ୟରେ ମହତ୍ତ୍ୱ ପୂର୍ଣ୍ଣ ଓ ପ୍ରଥମ ବୋଲି ସ୍ୱୀକୃତ ହୋଇଛି ।

ଋଗ୍‌ବେଦରେ ସର୍ବମୋଟ ସୂକ୍ତ ସଂଖ୍ୟା ୧୦୨୮ ଏବଂ ମନ୍ତ୍ର ସଂଖ୍ୟା ୧୦୫୮୦ ଋଗ୍‌ବେଦର ବିଭାଗ ଦୁଇ ପ୍ରକାର ଦେଖାଯାଏ ଯଥା— (କ) ମଣ୍ଡଳ, ଅନୁବାକ୍ ଓ ସୂକ୍ତ, (ଖ) ଅଷ୍ଟକ, ଅଧ୍ୟାୟ ଓ ସୂକ୍ତ । ପ୍ରଥମ 'ମଣ୍ଡଳ' ବିଭାଜନ 'ଅଷ୍ଟକ' ବିଭାଜନ ଅପେକ୍ଷା ଅର୍ବାଚୀନ ଏବଂ ଐତିହାସିକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ସମଗ୍ର ଋଗ୍‌ବେଦ ୧୦ଟି ମଣ୍ଡଳରେ ବିଭକ୍ତ । ପ୍ରତ୍ୟେକ ମଣ୍ଡଳର ଉପବିଭାଗକୁ 'ଅନୁବାକ' କହନ୍ତି ଓ ଅନୁବାକ୍‌ର ବିଭାଗକୁ ସୂକ୍ତ କହନ୍ତି । ସୂକ୍ତର ଖଣ୍ଡକୁ ମନ୍ତ୍ର ବା ଋକ୍ କହନ୍ତି, (ସେହିପରି 'ଅଷ୍ଟକ

(୨) ପାତଞ୍ଜଳ ଯୋଗ ଦର୍ଶନ—ପ୍ରକାଶକ ଧର୍ମଗ୍ରନ୍ଥ ଷ୍ଟୋର ପୃ-୧
(୩) ସାମଧ୍ୱନା ବୃଚ୍ଚ ଯଜୁଷୀ ନାଧୀୟୀତି କଦାଚନ
ବେଦସ୍ୟ ଧୀତ୍ୟ ବାପ୍ୟନ୍ତ ମାରଣ୍ୟକ ମଧ୍ୟତ୍ୟ (ଚ) ॥ (୪।୧୨୩
(ମନୁସଂହିତା)
ଅର୍ଥାତ୍ ସାମବେଦ ଧ୍ୱନି ଥାଉଁ କଦାପି ଋକ୍ ବା ଯଜୁର୍ବେଦ ପଢ଼ିବ ନାହିଁ । କିମ୍ବା ବେଦାନ୍ତ ବା ବେଦର ଆରଣ୍ୟକ ପଢ଼ି ଉତ୍କ୍ଷଣାନ୍ତ ବେଦ ପଢ଼ିବ ନାହିଁ ।]

ବିଭାଜନରେ ସମଗ୍ର ଋଗ୍‌ବେଦ ୮ଟି 'ଅଷ୍ଟକରେ' ବିଭକ୍ତ । ପ୍ରତ୍ୟେକ ଅଷ୍ଟକ ପୁଣି ୮ଟି ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟକୁ କେତେକ ବର୍ଗରେ ବିଭାଜନ ଦେଖାଯାଏ । ତେଣୁ ଋଗ୍‌ବେଦରେ ୨୦୦୬ଟି 'ବର୍ଗ' ଅଛି ଏବଂ ୬୪ଟି ଅଧ୍ୟାୟ ଅଛି । ଏହି ମଣ୍ଡଳ ମାନଙ୍କ ମଧ୍ୟରୁ ୧ମ ଓ ୧୦ମ ମଣ୍ଡଳରେ ଭିନ୍ନ ଭିନ୍ନ ଋଷିଙ୍କ ଦ୍ୱାରା ଦୃଷ୍ଟ ମନ୍ତ୍ର ମାନ ସଂଗୃହୀତ ହୋଇଛି ନବମ ମଣ୍ଡଳରେ ସୋମ ଦେବତା, ସୋମରସ ପାନ ବିଷୟକ ମନ୍ତ୍ର ସଂକଳିତ ହୋଇଛି । ଦ୍ୱିତୀୟ ମଣ୍ଡଳ ଠାରୁ ଅଷ୍ଟମ ମଣ୍ଡଳ ସହିତ ଜଣେ ଜଣେ ଋଷିଙ୍କର ମନ୍ତ୍ର ସଂଗ୍ରହ କରାଯାଇଛି, ସେମାନେ ଯଥାକ୍ରମେ ଗୃତ୍ସମଦ ବିଶ୍ୱାମିତ୍ର ବାମଦେବ, ଅତ୍ରି, ଭରଦ୍ୱାଜ, ବଶିଷ୍ଠ ଓ କଣ୍ୱ । ଏହି ଋଷିମାନେ ମନ୍ତ୍ର ମାନଙ୍କର ଦ୍ରଷ୍ଟା । ମାତ୍ର ରଚୟିତା ନୁହଁନ୍ତି ।

ଶୌନକ କଥିତ ଚରଣ ବ୍ୟୂହ ନାମକ ପରିଶିଷ୍ଟ ଗ୍ରନ୍ଥ ଅନୁସାରେ ଋଗ ବେଦର ୫ଟି ଶାଖା ଦେଖାଯାଏ । ଯଥା (୧) ଶାକଳ (୨) ବାଷ୍କଳ (୩) ଅଶ୍ୱଲାୟନ (୪) ଶାଂଖ୍ୟାୟନ ଓ (୫) ମାଣ୍ଡୁକାୟନ । ବର୍ତ୍ତମାନ ଶାକଳ ଶାଖାଟି କେବଳ ମିଳୁଛି କିନ୍ତୁ ବାଷ୍କଳ ଶାଖାଟି ସଂହିତା ରୂପ ମିଳୁ ନାହିଁ । ଶାକଳ ଶାଖାରେ ୧୦୧୭ଟି ସୂକ୍ତ ଥିବାବେଳେ ବାଷ୍କଳ ଶାଖାରେ ୧୦୨୫ଟି ସୂକ୍ତ ଥିବା ଜଣାଯାଏ । ଆଶ୍ୱଲାୟନ ସଂହିତା ଓ ବ୍ରାହ୍ମଣର କୌଣସି ଅସ୍ତିତ୍ୱ ମିଳୁ ନଥିଲାବେଳେ ତାର ଗୃହ୍ୟ ସୂତ୍ର ଓ ଶ୍ରୌତ ସୂତ୍ର ଦେଖାଯାଏ । ଶାଂଖ୍ୟାୟନ ସଂହିତାର ବ୍ରାହ୍ମଣ ଓ ଆରଣ୍ୟକ ବ୍ୟତୀତ ଅନ୍ୟ ଶାଖା ମିଳେ ନାହିଁ ଏବଂ ମଣ୍ଡୁକାୟନ ଶାଖା ମଧ୍ୟ ଆଜି କାଲି ଲୁପ୍ତ । ବାଷ୍କଳ, ଆଶ୍ୱଲାୟନ ଶାଖାର ଉଦ୍ଧାରଣ ଅନେକ ସ୍ଥାନରେ ମିଳେ ।

ଋଗ୍‌ବେଦର ସମ୍ବାଦ ସୂକ୍ତ ଭିତରେ ପୁରୁରବା ଓ ଉର୍ବଶୀ, ସରମା ପଣି, ଯମଯମୀ, ସମ୍ବାଦ, ସୂର୍ଯ୍ୟାସୂକ୍ତ, ବଶିଷ୍ଠ ଓ ବିଶ୍ୱାମିତ୍ର ସମ୍ବାଦ ସୂକ୍ତ ଆଦି ପ୍ରଧାନ । ପୁରୁରବା ଓ ଉର୍ବଶୀ ସମ୍ବାଦ ସୂକ୍ତରେ ଦେବାଙ୍ଗନା ଉର୍ବଶୀ ସହିତ ଏଳ ବଂଶର ରାଜା ପୁରୁରବାଙ୍କର ପ୍ରଣୟ ବ୍ୟାପାର ବର୍ଣ୍ଣିତ । ସ୍ୱର୍ଗରେ ପୁରୁରବାଙ୍କ ପ୍ରତି ଆକୃଷ୍ଟ ହୋଇ ଉର୍ବଶୀ ମର୍ତ୍ତ୍ୟକୁ ଓହ୍ଲାଇ ଆସିଛି ତିନୋଟି ସର୍ତ୍ତରେ---(୧) ସେ ସର୍ବଦା ଘୃତପାକ ଖାଦ୍ୟ ଭୋଜନ କରିବ । (୨) ତାର ପଲଙ୍କରେ ଦୁଇଟି ମେଷ ସର୍ବଦା

ବନ୍ଧା ଥିବେ, କେହି ତାଙ୍କୁ ହରଣ କରି ପାରିବେ ନାହିଁ । (୩) ଉର୍ବଶୀ ପୁରୁରବାଙ୍କୁ କୌଣସି ସମୟରେ ନଗ୍ନ ରୂପେ ଦେଖିବେ ନାହିଁ । ଏହି ସର୍ତ୍ତ ଯେଉଁ ସମୟରେ ଭଙ୍ଗ ହେବ ସେ ଆଉ ଉର୍ବଶୀଙ୍କୁ ପାଇବେ ନାହିଁ । ପୁରୁରବା ସେ ସର୍ତ୍ତରେ ରାଜି ହୋଇଗଲେ । ଉର୍ବଶୀ ଗନ୍ଧର୍ବ ରାଜ୍ୟର ଅପ୍ସରା ତେଣୁ ତାଙ୍କୁ ଫେରି ପାଇବା ପାଇଁ ଗନ୍ଧର୍ବମାନେ ମାୟା ବଳରେ ଗୋଟିଏ ମେଷକୁ ହରଣ କରିନେଲେ । ଉର୍ବଶୀ ମେଷ ରକ୍ଷା ପାଇଁ କାନ୍ଦି ଉଠିଲେ । ପୁରୁରବା ନଗ୍ନତାକୁ ଲକ୍ଷ୍ୟ ନକରି ମେଷ ରକ୍ଷା ପାଇ ଉଠିଗଲେ । ଆକାଶରେ ବିଦ୍ୟୁତ୍ ସ୍ଫୁରଣ ଦ୍ୱାରା ଉର୍ବଶୀ ପ୍ରଥମ ଥର ପାଇଁ ନଗ୍ନ ରୂପେ ଦେଖି ପୁରୁରବାଙ୍କ ପ୍ରସାଦରୁ ଅନ୍ତର୍ଦ୍ଧାନ ହେଲେ । ବିରହରେ ବ୍ୟାକୁଳ ପୁରୁରବା ଏକ ମନୋହର ସରୋବରରେ ହଂସୀ ରୂପୀ ଉର୍ବଶୀଙ୍କୁ ଚିହ୍ନିଲେ । ସେହି ଦୁଇ ଜଣଙ୍କର ହୃଦୟଗତ ଭାବ ପ୍ରକାଶିତ ହୋଇଛି ଋଗ ବେଦରେ, ଉର୍ବଶୀଙ୍କୁ ଫେରାଇ ଆଣିବାରେ ବିଫଳ ହୋଇ ପୁରୁରବା ଆତ୍ମହତ୍ୟା କରିବାକୁ ପ୍ରୟାସ କରନ୍ତି । ଉର୍ବଶୀ ପୁରୁରବାଙ୍କୁ ବୁଝାଇଛନ୍ତି, ମର୍ତ୍ତ୍ୟରେ ସ୍ୱର୍ଗର ଲଳନା ପାଇଁ କାହିଁକି ପ୍ରୟାସ ? ସ୍ୱର୍ଗର ରମଣୀ ହଂସୀ ପରି ନିଜର ସୁନ୍ଦର ରୂପ ଦେଖାଇ ପ୍ରାଣୀକୁ ପ୍ରଲୁବ୍ଧ କରି କ୍ରୀଡ଼ାସକ୍ତ ହୋଇ ମାଛ ପରି ନିଜର ଖେଳ ଦେଖାଇ କ୍ଷଣକରେ ଅନ୍ତର୍ହିତ ହୋଇଯାଏ । ସ୍ତ୍ରୀ ସହିତ ଚିରନ୍ତନ ପ୍ରେମ ସ୍ଥାପିତ ହୋଇ ପାରେ ନାହିଁ । ସ୍ତ୍ରୀର ହୃଦୟ ଗଧିଆ ହୃଦୟ ପରି କୁଟିଳ ଓ କର୍କଶ ।'' ଋଗ ବେଦରେ ଏହି ପରି ଯମର ଯମୁନା ସହିତ ସମ୍ବାଦ ଓ ସୂର୍ଯ୍ୟଙ୍କ କନ୍ୟା ସୂର୍ଯ୍ୟାଙ୍କର ସୋମ ସହିତ ବିବାହ ଓ ବର-କନ୍ୟାଙ୍କର ପ୍ରେମର ଅଭିବ୍ୟଞ୍ଜନା ସୁନ୍ଦର ରୂପେ ପ୍ରକାଶିତ ହୋଇଛି ।

## ଯଜୁର୍ବେଦ—

ଋକ୍ ଓ ସାମ ଠାରୁ ଭିନ୍ନ ଗଦ୍ୟାତ୍ମକ ମନ୍ତ୍ରକୁ ଯଜୁର୍ବେଦ କୁହାଯାଏ "ଅନିୟତାକ୍ଷରା ବସାନୋ ଯଜୁଃ" (ଯେଉଁଥିରେ ଅକ୍ଷର ସଂଖ୍ୟା ଅନିର୍ଣ୍ଣିତ) 'ଗଦ୍ୟାତ୍ମକଃ ଯଜୁଃ ବୋଲି କୁହାଯାଇଛି । ବେଦରେ ଦୁଇଟି ସଂପ୍ରଦାୟ ଦେଖାଯାଏ, ଯଥା— ବ୍ରହ୍ମ ସଂପ୍ରଦାୟ ଓ ଆଦିତ୍ୟ ସଂପ୍ରଦାୟ । ଏହି ସଂପ୍ରଦାୟର ପ୍ରତିନିଧି ହେଉଛନ୍ତି ଯଥାକ୍ରମେ କୃଷ୍ଣ ଯଜୁର୍ବେଦ ଓ ଶୁକ୍ଳ ଯଜୁର୍ବେଦ । ଶୁକ୍ଳ ଯଜୁର୍ବେଦରେ ଅଗ୍ନିହୋତ୍ର, ଦର୍ଶପୌର୍ଣ୍ଣମାସାଦି ଯଜ୍ଞାନୁଷ୍ଠାନର ମନ୍ତ୍ର ସମୂହ ସଂଗୃହୀତ ହୋଇଛି, କୃଷ୍ଣ ଯଜୁର୍ବେଦରେ ମନ୍ତ୍ର ସହିତ ବିନିୟୋଜକ ବ୍ରାହ୍ମଣର ସଂମିଶ୍ରଣ ଘଟିବାରୁ ତାହାକୁ 'କୃଷ୍ଣ' ଏବଂ

ଶୁକ୍ଳ ଯଜୁର୍ବେଦ ରେ ମନ୍ତ୍ର ଅମିଶ୍ର ଥିବାରୁ ତାକୁ 'ଶୁକ୍ଳ' କୁହାଯାଏ ।ପୁଣି ପ୍ରାଚୀନ କମ୍ବଦନ୍ତୀରୁ ଜଣାଯାଏ, ବୈଶମ୍ପାୟନ ମୁନି ଯାଜ୍ଞବଲ୍କଙ୍କୁ ବେଦ ଶିକ୍ଷା ଦେଉଥିଲେ । କୌଣସି କାରଣରୁ ରାଗିଯାଇ ଗୁରୁ ଶିକ୍ଷା ଦେଇଥିବା ବିଦ୍ୟା ଫେରସ୍ତ ମାଗିଲେ ତେଣୁ ଯାଜ୍ଞବଲ୍କ ପଠିତ ଯଜୁଷକୁ ବାନ୍ତ କରିବାରୁ ଅନ୍ୟାନ୍ୟ ଶିଷ୍ୟ ତିତ୍ତିର ପକ୍ଷୀ ରୂପେ ବମିତ ଯଜୁଷକୁ ପାନ କରିବାରୁ ତାର ନାମ କୃଷ୍ଣ ଯଜୁର୍ବେଦ ହେଲା । ଯାଜ୍ଞବଲ୍କ ସୂର୍ଯ୍ୟ ଉପାସନା କରି ଶୁକ୍ଳ ଯଜୁର୍ବେଦ ଲାଭ କରିଥିଲେ ।

## ଶୁକ୍ଳ ଯଜୁର୍ବେଦ—

ଯଜୁର୍ବେଦରେ ବୈଦିକ କର୍ମ କାଣ୍ଡ ସଂକଳିତ ହୋଇଛି । ଶୁକ୍ଳ ଯଜୁର୍ବେଦର ଦୁଇ ଶାଖା କାଣ୍ୱ ଓ ମାଧ୍ୟନ୍ଦିନ ଯଥାକ୍ରମେ ଦକ୍ଷିଣ ଭାରତ ଓ ଉତ୍ତର ଭାରତରେ ପ୍ରଚଳିତ ହେଉଛି । ମାଧ୍ୟନ୍ଦିନ ଶାଖାର ପ୍ରମୁଖ ସଂହିତା ବାଜସନେୟୀ ସଂହିତା ନାମରେ ବିଖ୍ୟାତ । ସୂର୍ଯ୍ୟ ଏହି ସଂହିତାର ଉପଦେଶକୁ ବାଜୀ ( ଘୋଡ଼ା ) ରୂପରେ ପ୍ରଦାନ କରିଥିବାରୁ ଏହାର ନାମ ବାଜସନେୟୀ ସଂହିତା ରଖାଯାଇଛି ।

## ବାଜସନେୟୀ ସଂହିତା—

ଏହି ସଂହିତାରେ ବିଶାଳ ଯଜ୍ଞର ପ୍ରାର୍ଥନା ସଂକଳିତ ହୋଇ ୪୦ ଅଧ୍ୟାୟରେ ସମ୍ପୂର୍ଣ୍ଣ ହୋଇଛି । ଏଥିରେ ପିତୃପିଣ୍ଡ ସମ୍ବନ୍ଧୀ ମନ୍ତ୍ର, ଅଗ୍ନିହୋତ୍ର, ସୋମଯଜ୍ଞ, ବାଜପେୟ ଯଜ୍ଞ, ରାଜସୂୟ ଯଜ୍ଞ ବେଦିର ନିର୍ମାଣ ବର୍ଣ୍ଣନ, ଶତରୁଦ୍ରୀୟ ହୋମ, ସୌତ୍ରାମଣୀ ଯଜ୍ଞ ସେଥିରେ ଅଶ୍ୱିନୀ କୁମାର, ସରସ୍ୱତୀ ଓ ଇନ୍ଦ୍ରଙ୍କୁ ଆହୁତ କରାଯାଇ ସୁରା ପ୍ରଦାନ ଅଶ୍ୱମେଧ ଯଜ୍ଞ, ପୁରୁଷ ମେଧ ଯଜ୍ଞର ବର୍ଣ୍ଣନା ମିଳେ । ଏଥିରେ ଅନ୍ତ୍ୟେଷ୍ଟିକ୍ରିୟା ବା ପିତୃମେଧ ସଂବନ୍ଧୀ କେତେକ ମନ୍ତ୍ର ଋଗ ବେଦରୁ ସଂଗୃହୀତ ହୋଇ ସଂକଳନ କରାଯାଇଛି । ୩୧ ଅଧ୍ୟାୟରେ ଋଗ୍‌ବେଦର ପୁରୁଷ ସୂକ୍ତରେ ପାଠାନ୍ତର ସଂକଳିତ ହୋଇ ଅଧିକ ୬ଟି ମନ୍ତ୍ର ସନ୍ନିବେଶିତ ହୋଇଛି । ବାଜସନେୟୀ ସଂହିତାର ୪୦ତମ ଅଧ୍ୟାୟ ହେଉଛି ଈଶାବାସ୍ୟ ଉପନିଷଦ । ଏହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

## (ଖ) କାଣ୍ୱ ସଂହିତା—

ଏହି ସଂହିତା ବର୍ତ୍ତମାନ ମହାରାଷ୍ଟ୍ରରେ ପ୍ରଚଳିତ । ପ୍ରାଚୀନ କାଳରେ ଏହା ଉତ୍ତର ଭାରତରେ ପ୍ରଚଳିତ ଥିଲା ଏଥିରେ ଗୋଟିଏ ମନ୍ତ୍ରରେ କୁରୁ ଓ ପାଞ୍ଚାଳ ଦେଶ ରାଜାଙ୍କର ନାମୋଲ୍ଲେଖ ମିଳେ । ମାନ୍ଦ୍ରାଜର ଊନ୍ଧରୁ ପ୍ରକାଶିତ ଏହି ସଂହିତାରେ ୪୦ ଅଧ୍ୟାୟ ୩୨୮, ଅନୁବାକ୍, ୨୦୮୬ ମନ୍ତ୍ର ସଂକଳିତ ହୋଇଛି । ମାଧ୍ୟନ୍ଦିନ ସଂହିତା ଅପେକ୍ଷା କାଣ୍ୱ ସଂହିତାରେ ୧୧୧ ଅଧିକ ମନ୍ତ୍ର ସନ୍ନିବେଶିତ ।

## କୃଷ୍ଣ ଯଜୁର୍ବେଦ—

ଭାଷ୍ୟକାର ପାତଞ୍ଜଳିଙ୍କ ମତରେ କୃଷ୍ଣ ଯଜୁର୍ବେଦର ୧୦୧ ଶାଖା ଥିଲା । ଚରଣ ବ୍ୟୂହ ଅନୁସାରେ ଏହାର ୮୫ ଶାଖା ଥିଲା ବର୍ତ୍ତମାନ କୃଷ୍ଣ ଯଜୁର୍ବେଦର ୪ଟି ଶାଖା ମିଳୁଛି । ଯଥା—(କ) ତୈତ୍ତିରୀୟ (ଖ) ମୈତ୍ରାୟଣୀ (ଗ) କଠ (ଘ) କପିଷ୍ଠଳ-କଠ । ଏହା ବ୍ୟତୀତ ଅନ୍ୟ ଶାଖା ସବୁ ଲୋପ ପାଇ ଯାଇଛି ।

**(କ) ତୈତ୍ତିରୀୟ ସଂହିତା**—ଏଥିରେ ୭ କାଣ୍ଡ, ୪୪ ପ୍ରପାଠକ ୬୩୧ ଅନୁବାକ୍ ଅଛି । ଏହା ଉପରେ ଭଟ୍ଟ ଭାସ୍କର ମିଶ୍ର ଓ ଆଚାର୍ଯ୍ୟ ସାୟଣଙ୍କ ଭାଷ୍ୟ ରଚିତ ହୋଇଛି ।

**(ଖ) ମୈତ୍ରାୟଣୀ ସଂହିତା**—ଏହି ସଂହିତାର ୪ଟି କାଣ୍ଡ ଅଛି । ୧ମ କାଣ୍ଡରେ ୧୧ଟି ପ୍ରପାଠକ, ୨ୟ କାଣ୍ଡରେ ୧୩ଟି, ୩ୟ କାଣ୍ଡରେ ୧୬ଟି ଓ ୪ର୍ଥ କାଣ୍ଡରେ ୧୪ଟି ପ୍ରପାଠକ ଅଛି ଏବଂ ଏହାର ମୋଟ ମନ୍ତ୍ର ସଂଖ୍ୟା ୩୧୪୪ । ଏହି ସଂହିତାର ସର୍ବ ପ୍ରଥମ ସଂସ୍କରଣ ଡଃ ଶ୍ରୋଦରଙ୍କ ଦ୍ୱାରା ଜର୍ମାନୀରୁ ପ୍ରକାଶିତ ହୋଇଛି ।

**(ଗ) କଠ ସଂହିତା**—କଠ ସଂହିତା ୫ଖଣ୍ଡରେ ବିଭକ୍ତ ଯଥା— ଇଠିମିକା ମାଧ୍ୟମିକ ଓରମିକା, ଯାଜ୍ୟାନୁ ବାକ୍ୟା ଓ ଅଶ୍ୱମେଧା ଦ୍ୟନୁବଚନ । ଖଣ୍ଡର ଅଂଶ 'ସ୍ଥାନକ' ନାମରେ କଥିତ ଯାହାକି ବୈଦିକ ସାହିତ୍ୟରେ ଅନ୍ୟ କେଉଁଠି ନାହିଁ । ଏଥିରେ ୪୦ ସ୍ଥାନକ, ୧୩ ଅନୁବଚନ, ୮୪୩ ଅନୁବାକ୍ ଓ ୩୦୯୧ ମନ୍ତ୍ର ଦେଖାଯାଏ ।

(ଘ) କପିଷ୍ଠଳ ସଂହିତା—ଏହି ସଂହିତା ୮ ଅଷ୍ଟକରେ ବିଭକ୍ତ । ଏହାର ପ୍ରଥମ ଅଷ୍ଟକ ବ୍ୟତୀତ ଅନ୍ୟ ଅଷ୍ଟକର ମଧ୍ୟ ଭାଗ ମିଳୁ ନାହିଁ ବା ଭୂଲ୍ ଅଂଶ ମିଳେ । କପିଷ୍ଠଳ ହେଉଛନ୍ତି ଜଣେ ଋଷି ।

ଯଜୁର୍ବେଦରେ ଦେବତାର ନାମୋଚ୍ଚାରଣ ସହିତ ଯଜ୍ଞୀୟ ପଦାର୍ଥ ଅର୍ପଣ ସହିତ ଏହା ଅଗ୍ନିଙ୍କ ନିମିତ୍ତ 'ଇଦମଗ୍ନୟ୍' ଏହା ଇନ୍ଦ୍ରଙ୍କ ନିମିତ୍ତ 'ଇଦମିନ୍ଦ୍ରାୟ୍'— ଏହିପରି ଶବ୍ଦ ଉଚ୍ଚାରଣ ସହିତ ଅଗ୍ନିରେ ଆହୂତି ପ୍ରଦାନ କରାଯାଉଥିଲା, ଅଗ୍ନି-ହୋତ୍ର ମନ୍ତ୍ରରେ— ଅଗ୍ନି ହିଁ ଆଲୋକ ଓ ଆଲୋକ ହିଁ ଅଗ୍ନି ବୋଲି କୁହାଯାଇଛି । ଅଗ୍ନି ବ୍ରହ୍ମରୁ ଉତ୍ପନ୍ନ ଓ ତାଙ୍କର ପ୍ରତୀକ । ଯଜ୍ଞରେ ଯେଉଁ ଇନ୍ଦ୍ର ସୂର୍ଯ୍ୟ ପ୍ରଭୃତି ଭିନ୍ନ ଭିନ୍ନ ଦେବତାଙ୍କର ଉପାସନା ଦେଖିବାକୁ ମିଳେ ତାହା ସେହି ବ୍ରହ୍ମଙ୍କର ଉପାସନା ଅଟେ—

"ତଦେ ବାଗ୍ନିସ୍ତ ଦାଦିତ୍ୟସ୍ତଦ୍ ବାୟୁ ସ୍ତଦୁ ଚନ୍ଦ୍ରମାଃ ।
ତଦେବ ଶୁକ୍ରଂ ତଦ୍ ବ୍ରହ୍ମତା ଆପଃ ସଃ ପ୍ରଜାପତିଃ ।"

(ଯଜୁ ଅ ୩୨ମଂ ୧)

ସେ ହିଁ ଅଗ୍ନି, ସେ ସୂର୍ଯ୍ୟ ଅଟନ୍ତି, ସେ ବାୟୁ ଅଟନ୍ତି, ସେ ଚନ୍ଦ୍ରମା ଅଟନ୍ତି । ସେ ଶୁକ୍ର ଅର୍ଥାତ୍ ଜ୍ୟୋତିର୍ମୟ ନକ୍ଷତ୍ର ଅଟନ୍ତି, ସେ ବ୍ରହ୍ମ (ହିରଣ୍ୟ ଗର୍ଭ) ଅଟନ୍ତି । ସେ ଜଳ (ଇନ୍ଦ୍ର) ଅଟନ୍ତି, ସେ ପ୍ରଜାପତି (ବିରାଟ) ଅଟନ୍ତି ।

## ସାମବେଦ—

ପ୍ରାଚୀନ କାଳରୁ ସାମଗାନ ଋଷିମାନଙ୍କ ଗାନ ଠାରୁ ଅଧିକ ମଧୁର ବୋଲି କୁହାଯାଏ । 'ସା' ଶବ୍ଦର ଅର୍ଥ ହେଉଛି ଋକ୍ ଏବଂ 'ଅମ୍' ଶବ୍ଦର ଅର୍ଥରେ ହେଉଛି ଗାନ୍ଧାର ଆଦିସ୍ୱର । 'ସାମ୍' ଶବ୍ଦର ଅର୍ଥ ଋକ୍ ସହିତ ସମ୍ପର୍କିତ ସ୍ୱରଯୁକ୍ତ ଗାୟନ । 'ବେଦାନାଂ ସାମବେଦୋଽସ୍ମି' (ଗୀତା ୧୦।୨୨) ବିଭିନ୍ନ ଉପନିଷଦରେ ମଧ୍ୟ ସାମବେଦର ପ୍ରଶଂସା କରାଯାଇଛି, ଯେଉଁ ଋକ୍ ଉପରେ ସାମଗାନ ହେଉଥିଲା ତା ବୈଦିକ କାଳରେ ସାମଯୋନି ନାମରେ ବିଦିତ । ଗୋଟିଏ ବିଶେଷ 'ସାମ' କୌଣସି ବିଶିଷ୍ଟ ତାଳ ଓ ଲୟରେ ଗୀତ ହେଉଥିଲା ।

ସାମବେଦ ଦୁଇ ଭାଗରେ ବିଭକ୍ତ ଯଥା— ୧-ଆର୍ଚ୍ଚିକ, ୨-ଗାନ । ଆର୍ଚ୍ଚିକର ଅର୍ଥ ଋକ୍ ସମୂହ । ଆର୍ଚ୍ଚିକ ମଧ୍ୟ ଦୁଇଭାଗରେ ବିଭକ୍ତ ଯଥା— ପୂର୍ବାର୍ଚ୍ଚିକ ଓ ଉତ୍ତରାର୍ଚ୍ଚିକ ।




ସାମବେଦର କେବଳ ୭୫ଟି ମନ୍ତ୍ର ବ୍ୟତୀତ ଅନ୍ୟ ସମସ୍ତ ମନ୍ତ୍ର ଋଗ୍‌ବେଦର । ଜୈମିନି ଗୃହ୍ୟ ସୂତ୍ର ଅନୁସାରେ ସାମବେଦରେ ୧୩ଟି ଶାଖା ଥିଲା । କିନ୍ତୁ ବର୍ତ୍ତମାନ ତିନୋଟି ଶାଖା କୌଥୁମ, ରାଣାୟନୀୟ ଓ ଜୈମିନୀୟ ମିଳୁଛି ।

(କ) କୌଥୁମ ଶାଖା ସାମବେଦର ତିନୋଟି ଶାଖା ମଧ୍ୟରେ ମହତ୍ତ୍ୱପୂର୍ଣ୍ଣ । ଏହାର 'ତାଣ୍ଡ୍ୟ ନାମକ ଶାଖା ଦେଖାଯାଏ । ଶଙ୍କରାଚାର୍ଯ୍ୟଙ୍କର ବେଦାନ୍ତ ଭାଷ୍ୟରେ ଏହାର ଉଲ୍ଲେଖ ଅଛି, 'ତାଣ୍ଡ୍ୟ ବ୍ରାହ୍ମଣ' ଓ ଛାନ୍ଦୋଗ୍ୟ ଉପନିଷଦ୍‌ର ଏହି ତାଣ୍ଡ୍ୟ ଶାଖା ସହିତ ସମ୍ପର୍କ ଅଛି ।

(ଖ) ରାଣାୟନୀୟ ଶାଖା— ରାଣାୟନୀୟ ଶାଖା ଓ କୌଥୁମ ଶାଖା ମଧ୍ୟରେ ମନ୍ତ୍ରର ତଫାତ୍ ନରହି କେବଳ ଉଚ୍ଚାରଣର ପାର୍ଥକ୍ୟ ଦେଖାଯାଏ । କୌଥୁମ ଶାଖାର 'ହାଉ' ଓ ରାଇ ରାଣାୟନୀୟ ଶାଖାର 'ହାବୁ' ଓ ରାୟି ଉଚ୍ଚାରଣ ହୁଏ । ରାଣାୟନୀୟର ଏକ ଶାଖାକୁ ସାତ୍ୟମୁଗ୍ରି କହନ୍ତି ।

(ଗ) ଜୈମିନୀୟ ଶାଖା— ଜୈମିନୀୟ ଶାଖାର ସମସ୍ତ ଅଂଶ ସଂହିତା ବ୍ରାହ୍ମଣ ଶ୍ରୌତ, ସୂତ୍ର, ଗୃହ୍ୟସୂତ୍ର ବର୍ତ୍ତମାନ ପ୍ରଚଳନ ହେଉଛି ।

କୌଥୁମୀୟ ଶାଖାର ସାମଗାନ ସଂଖ୍ୟା ୨୭୨୨ ଥିଲା ବେଳେ ଜୈମିନୀୟ ଶାଖାର ୩୬୮୧ । ଜୈମିନୀୟ ସଂହିତାର ଏକ ଶାଖା ତାଙ୍କ ଶିଷ୍ୟଙ୍କ ନାମ ଅନୁସାରେ 'ତଲବକାର' ଅଛି ।

ସାମଗାନ ହେଉଛି ଭାରତୀୟ ସଂଗୀତ ଶାସ୍ତ୍ରର ମୂଳ ଆଧାର । ତାଳ ଓ ଲୟ ସହିତ ସାମଗାନର ସ୍ୱର ମୂର୍ଚ୍ଛନା ମନରେ ଅପୂର୍ବ ଆନନ୍ଦ ଦିଏ, ନାରଦ ଶିକ୍ଷା ଅନୁସାରେ ସାମର ସ୍ୱର ସଂଖ୍ୟା ହେଉଛି ସାତ, ଗ୍ରାମ-୩, ମୂର୍ଚ୍ଛନା-୨୧ ଓ ତାଳ- ୪୯, ସାମବେଦର ସ୍ୱର ବେଣୁର ସାତ ସ୍ୱର- ସା- ଷଡ଼ଜ, ରେ- ଋଷଭ, ଗା- ଗାନ୍ଧାର ମା-ମଧ୍ୟମ, ପା-ପଞ୍ଚମ, ଧା-ଧୈବତ ନି- ନିଷାଦ ସହିତ ତୁଳନା କରାଯାଇଛି । ସାମଗାନ ଚାରି ପ୍ରକାର, ଯଥା— ବେୟଗାନ ବା ଗ୍ରାମେ ଗେୟଗାନ, (୨) ଅରଣ୍ୟ ଗାନ (୩) ଊହଗାନ, ଓ (୪) ଊହ୍ୟଗାନ । ବେୟଗାନ ଗ୍ରାମରେ ଓ ଅରଣ୍ୟ ଗାନ ପବିତ୍ର ଗାନ ହେତୁ ଅରଣ୍ୟରେ ବୋଲାଯାଏ । ଊହର ଅର୍ଥ ହେଉଛି, ଊହନ ବା କୌଣସି ବିଶିଷ୍ଟ ଯଜ୍ଞାନୁଷ୍ଠାନରେ ମନ୍ତ୍ରରେ ସାମୟିକ ପରିବର୍ତ୍ତନ । ଊହ୍ୟଗାନ ରହସ୍ୟାତ୍ମକ ତେଣୁ ସର୍ବସାଧାରଣରେ ବୋଲିବା ନିଷେଧ ।

ଅଗ୍ନ ଆୟାହି ବୀତୟେ ଗୃଣାନୋ ହବ୍ୟଦାତୟେ,
ନି ହୋତା ସତ୍ସି ବର୍ହିଷି ॥ (ସାମବେଦ)

ସାମଗାନ ୫ ପ୍ରକାର ଯଥା—(୧) ପ୍ରସ୍ତାବ— ଏହାକୁ ପ୍ରସ୍ତୋତା ନାମକ ଋତ୍ୱିକ ଗାନ କରେ— "ହୁଁ ଓଗ୍ନାଇ" । (୨) ଉଦ୍‌ଗୀଥ-— ଏହାକୁ ଉଦ୍‌ଗାତା ନାମକ ଋତ୍ୱିକ ଗାଏ । ଏହାର ଆରମ୍ଭରେ ଓଁକାର ସଂଯୁକ୍ତ କରାଯାଏ । "ଓମ ଆୟାହି ବୀତୟେ ଗୃଣାନୋ । ହବ୍ୟଦାତୟେ ।" (୩) ପ୍ରତିହାର—ଏହାକୁ ପ୍ରତିହର୍ତ୍ତା ନାମକ ଋତ୍ୱିକ ଗାଏ । "ନିହୋତା ସତ୍ସି ବର୍ହିଷି ଓମ ।" ଏହାପରେ ଦୁଇ ଦୁଇ ବେଦ ଯାହାକୁ ଦୁଇ ଦୁଇ ଥର ଗାନ କରାଯାଏ । (୪) ଉପଦ୍ରବ— ଏହାକୁ ଉଦ୍‌ଗାତା ଋତ୍ୱିକ ଗାନକରେ, ନିହୋତା ସତ୍ସିବ ।" (୫) ନିଧନ – ଏହାକୁ ତିନିଜଣ ଋତ୍ୱିକ, ପ୍ରସ୍ତୋତା, ଉଦ୍‌ଗାତା ଓ ପ୍ରତିହର୍ତ୍ତା ଏକତ୍ର ଗାନ କରନ୍ତି— "ହିଁଷି ଓମ୍", ଏହାପରେ *ସାମକୁ ତିନିଥର ଗାନ କଲେ ତାହାକୁ ସ୍ତୋତ୍ର କୁହାଯାଏ ।

* ବୈଦିକ ସାହିତ୍ୟ ଓ ସଂସ୍କୃତି— ଅଭିନ୍ନ ଚନ୍ଦ୍ର ଦାଶ

## ଅଥର୍ବ ବେଦ—

ଅଥର୍ବଶ ଋଷିଙ୍କ ନାମ ଅନୁସାରେ ଏହି ବେଦକୁ ଅଥର୍ବବେଦ କୁହାଯାଏ । ବ୍ରହ୍ମାଙ୍କ ପୁତ୍ର ଭୃଗୁ ଏବଂ ଭୃଗୁଙ୍କ ଠାରୁ ଅଥର୍ବଣଙ୍କର ଜନ୍ମ । ଏହାଙ୍କର ଅନ୍ୟନାମ ଅଙ୍ଗିର । ତେଣୁ ଅଥର୍ବ ବେଦକୁ ଅଥର୍ବାଙ୍ଗିରସ କୁହାଯାଏ । 'ଥର୍ବ' ଧାତୁ କୁଟିଳ ତଥା ହିଂସା ସୂଚକ ଅର୍ଥରେ ବ୍ୟବହୃତ ହୋଇଛି, ତେଣୁ ଅଥର୍ବ ବେଦର ଅର୍ଥ ହେଲା, ମନକୁ ଅହିଂସ୍ ବୃତ୍ତିରେ ତଥା ଅକୁଟିଳତାରେ ସ୍ଥିର ରଖିବା ।

ଅଥର୍ବବେଦର ୯ଟି ଶାଖା ଥିଲା (ନବଧାଽର୍ଥବଣୋ ବେଦଃ ) ବେଦବ୍ୟାସ ସୁମନ୍ତୁଙ୍କୁ ଏହି ବେଦ ପଢ଼ାଇ ଥିଲେ । ସେ ନିଜ ଶିଷ୍ୟ କବନ୍ଧଙ୍କୁ, କବନ୍ଧ ତାଙ୍କ ଶିଷ୍ୟ ଦେବଦର୍ଶ ଓ ପଥ୍ୟଙ୍କୁ ଏହି ବେଦ ପଢ଼ାଇ ଥିଲେ । ବେଦଦର୍ଶ ଶୌକ୍ଲାୟନିନ ବ୍ରହ୍ମବଳ, ମୌଦଗଳ ଓ ପିପଲ୍ଲାଦଙ୍କୁ ଏବଂ ଶୌନକ, ବଭ୍ରୁ ଓ ସୈନ୍ଧ ବାୟନଙ୍କୁ ଅଥର୍ବ ବେଦ ପଢ଼ାଇ ଥିଲେ ।

ଅଥର୍ବ ବେଦର ୯ଟି ଶାଖା—(୧) ପିପ୍ପଲ୍ଲାଦ (୨) ସ୍ତୋଦ (ବା ତୌଦ) (୩) ମୌଦ (୪) ଶୌନକୀୟ (୫) ଜାଜଳ (୬) ଜଳଦ (୭) ବ୍ରହ୍ମବଦ (୮) ଦେବଦର୍ଶ (୯) ଚୃରଣ ବୈଦ୍ୟ । ଅଥର୍ବ ବେଦରେ ୨୦ କାଣ୍ଡ, ୭୩୧ଟି ସୂକ୍ତ ଏବଂ ୫୯୮୭ଟି ମନ୍ତ୍ର ଅଛି ଏବଂ ଏହା ୩୪ ପ୍ରପାଠକ, ୧୧୧ ଅନୁବାକ ଓ ୭୭୩ ବର୍ଗରେ ବିଭକ୍ତ । ଏଥିରେ ୭୩୮୨୭ ପଦଅଛି । ଅଥର୍ବ ବେଦର ପ୍ରଥମ କାଣ୍ଡର ପ୍ରତ୍ୟେକ ସୂକ୍ତରେ ଚାରିଟି ଲେଖାଁଏ, ଦ୍ୱିତୀୟ କାଣ୍ଡରେ ପାଞ୍ଚଟି ଲେଖାଁଏ ଏବଂ ୮ମ କାଣ୍ଡ ଠାରୁ ବଡ଼ ବଡ଼ ମନ୍ତ୍ର ଦେଖାଯାଏ । ୧୪ଶ କାଣ୍ଡରେ ବୈବାହିକ ସୂକ୍ତ, ୧୫ଶ କାଣ୍ଡରେ ବ୍ରାତ୍ୟର ଯଜ୍ଞ ସମ୍ପାଦାନର ଆଧ୍ୟାତ୍ମିକ ବର୍ଣ୍ଣନା ଏବଂ ୧୮ଶ କାଣ୍ଡରେ ଶ୍ରାଦ୍ଧ, ଅନ୍ତ୍ୟେଷ୍ଟି କ୍ରିୟା ଆଦି ମନ୍ତ୍ର ସଂକଳିତ ହୋଇଛି । ଅଥର୍ବ ବେଦରେ ବ୍ରହ୍ମଙ୍କର ଉପାସନା ଅଗ୍ନି, ବରୁଣ, ସବିତା ଓ ଇନ୍ଦ୍ରଙ୍କର ଉପାସନାକୁ ମଧ୍ୟ ବୁଝାଉ ଥିଲା—

"ସ ବରୁଣଃ ମାୟମଗ୍ନି ର୍ଭବତି ସ ମିତ୍ରୋ ଭବତି ପ୍ରାତରୁଦ୍ୟନ
ସ ସବିତା ଭୂତ୍ୱାନ୍ତରୀକ୍ଷେଣ ଯାତି ସଇନ୍ଦ୍ରୋଭୂତ ତପତି ମଧ୍ୟ ତୋଦିବସ" ।

(ଅଥର୍ବ ବେଦ ୧୩।୩।୩)

ସେ ସାୟଂକାଳରେ ଅଗ୍ନି ଓ ବରୁଣ ହୁଏ ଓ ପ୍ରାତଃ କାଳରେ ଉଦୟ ହୋଇ ସେ ମିତ୍ର ହୋଇଥାଏ । ସେ ସବିତା ହୋଇ କରି ଅନ୍ତରୀକ୍ଷରେ ଚଳମାନ ହୋଇଥାଏ, ସେ ଇନ୍ଦ୍ର ହୋଇ ଦ୍ୟୁଲୋକକୁ ତାପିତ କରିଥାଏ । ଏହିପରି ଋଗ ବେଦର ଦେବତାଙ୍କ ପରି ଅଥର୍ବ ବେଦରେ ବର୍ଣ୍ଣନା ମିଳେ ଏବଂ ବିଶ୍ୱ ପ୍ରେମ ପାଇଁ ଶତ୍ରୁ ଓ ମିତ୍ରଙ୍କ ଠାରୁ ଅଭୟ ପ୍ରାପ୍ତିର କଳ୍ପନା କରାଯାଇଛି ।

"ଓଁ ଅଭୟଂ ମିତ୍ରାଦ ଭୟ୍ ମମତ୍ରାଦଭୟଂ ଜ୍ଞାତାଦଭୟଂ ପୁରୋୟଃ
ଅଭୟଂ ନକ୍ତମ ଦନ୍ନଂ ଦ୍ଵାନଃ ସର୍ବା ଆଶା ମମ ମିତ୍ରଂ ଭବନ୍ତୁ ॥"

(ଅଥର୍ବ ବେଦ ୧୯୧୫-୫-୬)

ଆମ୍ଭଙ୍କୁ ମିତ୍ରଙ୍କ ଠାରୁ ଅଭୟ ପ୍ରାପ୍ତ ହେଉ, ଶତ୍ରୁଙ୍କ ଠାରୁ ଅଭୟ ପ୍ରାପ୍ତ ହେଉ, ପରିଚିତଙ୍କ ଠାରୁ ଅଭୟ ପ୍ରାପ୍ତ ହେଉ, ଏବଂ ଯେ ଅପରିଚିତ ଅଛନ୍ତି ସେମାନଙ୍କ ଠାରୁ ମଧ୍ଯ ଅଭୟ ପ୍ରାପ୍ତ ହେଉ । ରାତ୍ର ଓ ଦିନରେ ଆମ୍ଭେ ନିର୍ଭୟ ରହିବୁ । ସମସ୍ତ ଦିଗ ଆମର ମିତ୍ର ରୂପେ ରହନ୍ତୁ ।

ଅଥର୍ବ ବେଦର ଆୟୁର୍ବେଦ ହେଉଛି ଏକ ପ୍ରଧାନ ଅଙ୍ଗ । ଏଥିରେ 'ଜ୍ୱର ପରକ', "ଅଗ୍ନି ପରକ" ମନ୍ତ୍ର ରୋଗର ଲକ୍ଷଣ ଓ ଚିକିତ୍ସା ରୂପେ ବର୍ଣ୍ଣିତ । ଅଥର୍ବ ବେଦ ମନ୍ତ୍ରରେ ଶଲ୍ୟ ଚିକିତ୍ସା ପ୍ରଣାଳୀ, ସୁଖ ପ୍ରସବ ନିମିତ୍ତ ଯୋନି ଭେଦନ, ଜଳ ଧାବନ ଦ୍ୱାରା ବ୍ରଣ ଚିକିତ୍ସା ଏବଂ ସର୍ପ ବିଷହରଣ କୌଶଳ ଇତ୍ୟାଦି ବର୍ଣ୍ଣନ କରାଯାଇଛି । "ବିଷସ୍ୟ ବିଷମୌଷଧମ୍" (୭।୮୮।୧) ଅଥର୍ବ ବେଦର ଅଭିଚାର ମନ୍ତ୍ରରେ ଭୟାନକ ପିଶାଚମାନଙ୍କର ବର୍ଣ୍ଣନା ମିଳେ । ଏଥିରେ ଭୂତ ପ୍ରେତ, ପିଶାଚଙ୍କୁ ମନୁଷ୍ୟଙ୍କ ଗୃହ ଓ ସେମାନଙ୍କର ନିବାସ ସ୍ଥଳ ପରିତ୍ୟାଗ କରି ଚାଲି ଯିବାକୁ ନିର୍ଦ୍ଦେଶ ଦିଆ ଯାଇଛି । ଏଥିରେ ଗନ୍ଧର୍ବ ଓ ଅପସରମାନଙ୍କର ବର୍ଣ୍ଣନା ମିଳେ । ଅଥର୍ବ ବେଦରେ ଇନ୍ଦ୍ର-ଜାଲ, ଆୟୁଷ୍ୟ ସୂକ୍ତରେ ଦୀର୍ଘାୟୁ ନିମିତ୍ତ "ରକ୍ଷା ସୂତ୍ର" ବନ୍ଧନର ବର୍ଣ୍ଣନା, ପୌଷ୍ଟିକ ସୂକ୍ତରେ ବ୍ୟବସାୟରେ ଉନ୍ନତି, ବୀଜ ବପନ, ଗୃହ ନିର୍ମାଣ ନିମିତ୍ତ ଆଶୀର୍ବାଦ ପ୍ରାର୍ଥନା କରାଯାଇଛି, ପ୍ରାୟଶ୍ଚିତ୍ତ ଏବଂ ଉପଗ୍ରହ ମନ୍ତ୍ରରେ ଅପରାଧ ଓ ପାପରୁ ମୁକ୍ତ ଲାଭ କରିବା ନିମିତ୍ତ ପାପଘ୍ନ ମନ୍ତ୍ର ବର୍ଣ୍ଣିତ । କେତେକ ସୂକ୍ତରେ ସ୍ତ୍ରୀ କର୍ମାଣି ମନ୍ତ୍ର ଅର୍ଥାତ୍ ବିବାହ ଓ ପ୍ରଣୟର ଚିତ୍ର ସଙ୍କଳିତ ହୋଇଛି ।

# ଷଷ୍ଠ ପରିଚ୍ଛେଦ

## ବୈଦିକ ସାହିତ୍ୟ

ବେଦ ସାଧାରଣତଃ ଦୁଇ ଭାଗରେ ବିଭକ୍ତ । ବେଦର ସଂହିତା ଓ ବ୍ରାହ୍ମଣ କର୍ମକାଣ୍ଡ ମୂଳକ ଏବଂ ଉପନିଷଦ ଓ ଆରଣ୍ୟକ ଜ୍ଞାନକାଣ୍ଡାତ୍ମକ । ମୂଳ ବେଦରେ ସଂକଳିତ ହୋଇଥିବା ଧର୍ମ ଅର୍ଥାତ୍ ଯଜ୍ଞାଦି କର୍ମ ତଥା ବିଧି ନିଷେଧର ବିସ୍ତୃତ ବ୍ୟାଖ୍ୟା ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ରହିଛି । ବ୍ରାହ୍ମଣ ଓ ଆରଣ୍ୟକର ରଚନା କାଳ ସଂହିତା ଓ ଉପନିଷଦ କାଳର ମଧ୍ୟବର୍ତ୍ତୀ ଯୁଗ । ଏଥିରେ ବର୍ଣ୍ଣାଶ୍ରମ ଧର୍ମର ପ୍ରତିଷ୍ଠା ପୂର୍ଣ୍ଣ ରୂପେ ପ୍ରତିଫଳିତ ହୋଇଛି । ବ୍ରାହ୍ମଣ ମାନଙ୍କରେ କର୍ମ କାଣ୍ଡ ବିସ୍ତୃତ ଭାବରେ ବର୍ଣ୍ଣନା ସହିତ ଯଜ୍ଞକୁ ଈଶ୍ୱର ନିତ୍ୟାତ୍ମକ ରୂପେ ଚିତ୍ରଣ କରାଯାଇଛି । ଯଜ୍ଞ ବିଷ୍ଣୁଙ୍କର ରୂପ ବୋଲି କୁହାଯାଇଛି । ଆରଣ୍ୟକମାନଙ୍କରେ ଯଜ୍ଞର ଦାର୍ଶନିକ ବ୍ୟାଖ୍ୟା ଅଛି ଏବଂ ସେ ସବୁ ରହସ୍ୟମାନଙ୍କର ମୀମାଂସା କରାଯାଇଛି । ବେଦର ଅନ୍ତିମ ଭାଗ ଉପନିଷଦ । ଏହି ଗ୍ରନ୍ଥରେ ବୈଦିକ ଋଷିମାନେ ଆଧ୍ୟାତ୍ମିକ ବିଦ୍ୟାର ଗୁଢ଼ତମ ରହସ୍ୟମାନଙ୍କର ବିଶଦ ବିବେଚନ କରିଅଛନ୍ତି । ଭାରତୀୟ ତତ୍ତ୍ୱଜ୍ଞାନର ମୂଳସ୍ରୋତ ଏହି ଉପନିଷଦମାନଙ୍କରେ ବିଦ୍ୟମାନ ।

**ବ୍ରାହ୍ମଣ**—'ବ୍ରାହ୍ମଣ' ନାମକରଣ ଏହାର ପ୍ରଧାନ ବିଷୟ ବ୍ରହ୍ମନ୍ (ବୃହ୍ ବର୍ଦ୍ଧନେ, ବଢ଼ିବାବାଲା ଅର୍ଥାତ୍ ବିତାନ ଯଜ୍ଞ)ରୁ ଆସିଛି । "ମନ୍ତ୍ର ବ୍ରାହ୍ମଣୟୋର୍ବେଦନାମଧେୟମ୍" ଅର୍ଥାତ୍ ବ୍ରାହ୍ମଣ ଓ ମନ୍ତ୍ର ଭାଗ ବେଦର ଦୁଇଟି ବିଭାଗ । ବ୍ରାହ୍ମଣ ଗ୍ରନ୍ଥମାନଙ୍କ ମଧ୍ୟରୁ ଚାରିଗୋଟି ବେଦସହ ସମ୍ପୃକ୍ତ ଗ୍ରନ୍ଥ ପ୍ରସିଦ୍ଧ ଅଟେ—ଐତରେୟ ଋଗ ବେଦର, ଶତପଥ ଯଜୁର୍ବେଦର, ତାଣ୍ଡ୍ୟ ବ୍ରାହ୍ମଣ ସାମବେଦର ଓ ଗୋପଥ ଅଥର୍ବ ବେଦର । ତାଣ୍ଡ୍ୟ-ବ୍ରାହ୍ମଣରେ ସରସ୍ୱତୀ ନଦୀର ଲୁପ୍ତ ପ୍ରବାହକୁ 'ବିନଶନ' ଏବଂ ତାର ପୁନଃ ଆଗମନ ସ୍ଥାନକୁ 'ପ୍ଲକ୍ଷ ପ୍ରସ୍ରବଣ' କୁହାଯାଇଛି । ଏହି ଦୁଇ ସ୍ଥାନର ଦୂରତ୍ୱ

ଅଶ୍ୱ ଗତିରେ ୪୪ ଦିନରେ ଅତିକ୍ରମ କରାଯାଏ । ଯମୁନା ନଦୀ ପ୍ରବାହିତ ହେଉଥିବା ପ୍ରଦେଶକୁ 'କାର ପଚପୂ' କୁହାଯାଏ । ସରସ୍ୱତୀ ଓ ଦୃଶଦ୍‌ବତୀ ନଦୀର ମଧ୍ୟବର୍ତ୍ତୀ ଦେଶ ତାର ସଙ୍ଗମର ସଙ୍କେତ ମିଳେ । କୁରୁକ୍ଷେତ୍ରକୁ ପ୍ରଜାପତିଙ୍କ ବେଦୀ ରୂପେ "ଏତାବତୀ ବା ପ୍ରଜାପତେର୍ବେଦୀଯାବତ୍ କୁରୁକ୍ଷେତ୍ରମିତି ।" (ତାଣ୍ଡ୍ୟ ୨୫।୧୩।୩) ବର୍ଣ୍ଣନା କରାଯାଇଛି । ଶତପଥ ବ୍ରାହ୍ମଣ ଗ୍ରନ୍ଥ ସମସ୍ତ ବ୍ରାହ୍ମଣ ଗ୍ରନ୍ଥଠାରୁ ସର୍ବ ପ୍ରାଚୀନ । ଏହାର ୨ୟ କାଣ୍ଡରେ ଥିବା ଜ୍ୟୋତିଷ ଘଟଣାରୁ ପ୍ରସିଦ୍ଧ ଜ୍ୟୋତିଷୀ ଶଙ୍କର ବାଳକୃଷ୍ଣ ଦୀକ୍ଷିତଙ୍କ ଗଣନା ଅନୁସାରେ ଉକ୍ତ ଘଟଣା ବିକ୍ରମ ପର୍ବ ୩୦୦୦ ବର୍ଷ ତଳର । ମ୍ୟାକ୍ସ ମୂଲର ଶତପଥ ବ୍ରାହ୍ମଣକୁ ଖ୍ରୀ. ପୂ. ୧୧୮୧ର ପୂର୍ବବର୍ତ୍ତୀ ବୋଲି ସ୍ୱୀକାର କରିନାହାନ୍ତି । *

**ଐତରେୟ ବ୍ରାହ୍ମଣ**—ଜଣେ ଋଷିଙ୍କର ଦୁଇଟି ସ୍ତ୍ରୀ ଥିଲେ—ଜଣେ ବ୍ରାହ୍ମଣ କନ୍ୟା ଅନ୍ୟ ଜଣେ ଶୂଦ୍ର କନ୍ୟା । ଯଜ୍ଞ ସ୍ଥଳରେ ଉକ୍ତ ମହର୍ଷି ବ୍ରାହ୍ମଣୀ ସ୍ତ୍ରୀଙ୍କ ଗର୍ଭରୁ ଜାତ ସନ୍ତାନକୁ ବିଦ୍ୟା ଶିକ୍ଷା ଦେଲେ ଅଥଚ ଶୂଦ୍ର ସ୍ତ୍ରୀ ଗର୍ଭଜାତ ସନ୍ତାନ ସେଥିରୁ ବଞ୍ଚିତ ହେଲା । ସେ ଯେତେବେଳେ ନିଜ ମାକୁ ଏ ବିଷୟ ଜଣାଇଲା, ମା ନିରୁପାୟ ହୋଇ କହିଲେ—"ତୋର ବାପା ଯେତେବେଳେ ତୋତେ ଉପେକ୍ଷା କରୁଛନ୍ତି, ସେତେବେଳେ ମୁଁ ଆଉ କାହା ପାଖକୁ ଯିବ ? ମୁଁ ତ ଶୂଦ୍ରା କନ୍ୟା ଅର୍ଥାତ୍ ଏହି ପୃଥିବୀ ମାତାର ସନ୍ତାନ । ତେବେ ସେହି ପୃଥିବୀମାତାଙ୍କୁ ଡାକ ଦେଖି ।" ଏହାପରେ ସେ ପୃଥିବୀ ମାତାଙ୍କୁ ଡାକିଲେ ।

ମାତା ବସୁନ୍ଧରା ଉଭାହୋଇ କହିଲେ—"ଭୟ ନାହିଁ । ସବୁଜ୍ଞାନ ମୋର ଭିତରେ ରହିଛି । ଏହି ମିଳିଟିକୁ ମୋତେ ଦେଇଦିଅ ! ମୁଁ ତାକୁ ଶିଖାଇଦେବ ।" ପୃଥିବୀ ମାତା ତାକୁ ସବୁ ଶାସ୍ତ୍ରରେ ପଣ୍ଡିତ କରାଇ ତାର ମାଆ ନିକଟକୁ ଫେରାଇ ଦେଲେ । ସେତେବେଳେ ସେହିପିଲା ତାର ବାଲ୍ୟ କାଳରେ ପାଇଥିବା ଅପମାନର ପ୍ରତିଶୋଧ ନେଲେ । ସେ ଋକ୍‌ବେଦର ସର୍ବଶ୍ରେଷ୍ଠ ବ୍ରାହ୍ମଣ ଗ୍ରନ୍ଥ ଲେଖିଲେ । ଆଜି ବି ଏ ଯେତେ ବଡ଼ ବିଦ୍ୱାନ ବ୍ରାହ୍ମଣ ହୁଅନ୍ତୁନା କାହିଁକି, ସେହି ବ୍ରାହ୍ମଣ ଗ୍ରନ୍ଥ ନ ପଢ଼ିଲେ ଋଗ୍‌ବେଦରେ ପ୍ରବେଶ

* ବୈଦିକ ସାହିତ୍ୟ ଓ ସଂସ୍କୃତି—ଉମା ଚନ୍ଦ୍ର ଦାଶ ।

କରିବା ଅସମ୍ଭବ । ତାପରେ ସେ ଯେ ଇତରାର ପୁଅ, ଏହାକୁ ସେ ଭଲ ଭାବରେ ବୁଝାଇ ଦେବା ପାଇଁ ସେ ନିଜକୁ ଇତରାର ପୁତ୍ର 'ଐତରେୟ' ନାମରେ ଖ୍ୟାତ କରିଥିଲେ । ତେଣୁ ତାଙ୍କର ଲିଖିତ ବ୍ରାହ୍ମଣର ନାମ ହେଲା 'ଐତରେୟ ବ୍ରାହ୍ମଣ' । ମହୀର ଶିଷ୍ୟ ବୋଲି ତାଙ୍କୁ ମହୀଦାସ ମଧ୍ୟ କୁହାଯାଏ । ତେଣୁ 'ଐତରେୟ ମହୀଦାସ' ହେଉଛି ତାଙ୍କର ପରିଚୟ ।

ଐତରେୟ ବ୍ରାହ୍ମଣ ୪୦ ଅଧ୍ୟାୟରେ ଏବଂ ୮ ପଞ୍ଚକରେ ବିଭକ୍ତ । ଏହା ସୋମଯଜ୍ଞର ବର୍ଣ୍ଣନାରେ ପରିପୂର୍ଣ୍ଣ ( ରାଜା ହରିଶ୍ଚନ୍ଦ୍ର ବା ଶୁନଃଶେପ ଉପାଖ୍ୟାନ ନିମିତ୍ତ ଐତରେୟ ବ୍ରାହ୍ମଣ ଗୁରୁତ୍ୱ, ତଥା ମହତ୍ତ୍ୱପୂର୍ଣ୍ଣ । ଶୁନଃଶେପ ଋଗ୍‌ବେଦର ଋଷି ଏବଂ କେତେକ ମନ୍ତ୍ରର ଦ୍ରଷ୍ଟା । ଇକ୍ଷ୍ୱାକୁ ବଂଶର ରାଜା ହରିଶ୍ଚନ୍ଦ୍ର ଅପୁତ୍ରିକ ଥିଲେ, ବରୁଣ ତାଙ୍କର ଉପାସନାରେ ସନ୍ତୁଷ୍ଟ ହୋଇ ପୁତ୍ରଲାଭର ବରଦେଲେ କିନ୍ତୁ ସେ ପୁତ୍ରକୁ ବଳିଦାନ ଦେବାକୁ ହେବ । ରାଜା ହରିଶ୍ଚନ୍ଦ୍ର ରୋହିତ ନାମରେ ଗୋଟିଏ ପୁତ୍ର ଲାଭକଲେ କିନ୍ତୁ ବରୁଣଙ୍କ ଭୟରେ ବନ ମଧ୍ୟରେ ଯାଇ ଆତ୍ମ ଗୋପନ କଲା । ବରୁଣଙ୍କ ଶାପରେ ହରିଶ୍ଚନ୍ଦ୍ର ରୋଗଗ୍ରସ୍ତ ହେଲେ । ଋଷି ଅଜୀଗର୍ତ୍ତଙ୍କର କନିଷ୍ଠ ପୁତ୍ରକୁ କିଣି ଆଣିଲେ । ରୋହିତ ବଦଳରେ ବଳିଦାନ ଦେବାପାଇଁ । ଶୁନଃଶେପ ଯଜ୍ଞ ଖୁଣ୍ଟରେ ବନ୍ଧା ହୋଇଥିଲେ । ଯଜ୍ଞ ଆରମ୍ଭ ହେଲା । ମୁକ୍ତି ପାଇଁ ଶୁନଃଶେପ ବରୁଣଙ୍କୁ ପ୍ରାର୍ଥନା କରନ୍ତେ ପାଶ ଗୁଡ଼ିକ ଖୋଲିଗଲା ଏବଂ ରାଜା ହରିଶ୍ଚନ୍ଦ୍ର ରୋଗ ମୁକ୍ତହେଲେ । ଋଷି ଅଜୀଗର୍ତ୍ତ ନିଜ ପୁତ୍ରକୁ ଫେରିପାଇବା ପାଇଁ ଚେଷ୍ଟାକଲେ କିନ୍ତୁ ଶୁନଃଶେପ ନିଷ୍ଠୁର ପିତାଙ୍କ ନିକଟକୁ ଯିବାପାଇଁ ରାଜି ନହୋଇ ବିଶ୍ୱାମିତ୍ରଙ୍କର ପୋଷ୍ୟ ପୁତ୍ର ହୋଇ ରହିଲେ ।

ଐତରେୟ ବ୍ରାହ୍ମଣରେ ଐତିହାସିକ ବିବରଣୀରୁ ଦକ୍ଷିଣରେ 'ଭୋଜରାଜ୍ୟ' ପଶ୍ଚିମରେ 'ନୀଚ୍ୟ' ଓ 'ଅପାଚ୍ୟ' ଲୋକଙ୍କ ରାଜ୍ୟ, ଉତ୍ତରରେ ଉତ୍ତରକୁରୁ ଓ ମଧ୍ୟଦେଶରେ କୁରୁପଞ୍ଚାଳ ରାଜ୍ୟ ଏବଂ କାଶୀ, ମତ୍ସ୍ୟ, କୁରୁକ୍ଷେତ୍ର ଓ ଖାଣ୍ଡବ ଆଦି ସ୍ଥାନର ବର୍ଣ୍ଣନା ଅଛି । ଏଥିରେ ପରୀକ୍ଷିତ, ଜନ୍ମେଜୟ ମନୁପୁତ୍ର ଶର୍ଯ୍ୟାତ, ପିଜବନ ପୁତ୍ର ସୁଦାସ, ଦୁଷ୍ୟନ୍ତ ପୁତ୍ର ଭରତଙ୍କର ନାମ ଉଲ୍ଲେଖ ମିଳେ । ଦେବଗଣ ଓ ପିତୃଗଣ ଶୁଣିବା ପାଇଁ ବହୁପତ୍ନୀ ଗ୍ରହଣ କଥା କୁହାଯାଇଛି । ଏଥିରେ ମଧ୍ୟ ଇନ୍ଦ୍ର ସର୍ବାପେକ୍ଷା ଅଧିକ ତେଜସ୍ୱୀ ଦେବତା ବୋଲି ଉଲ୍ଲେଖ ଅଛି ।

ଐତରେୟ ବ୍ରାହ୍ମଣର ବିଷୟ ଉପରେ ଆଉ ଏକ ବ୍ରାହ୍ମଣଗ୍ରନ୍ଥ ମିଳେ ତାର ନାମ 'ସାଂଖ୍ୟାୟନ ବା କୌଷିତକି' କାରଣ କୌଷିତକି ଋଷିଙ୍କର ପୁତ୍ର ଉକ୍ତ ବ୍ରାହ୍ମଣର ଉପଦେଷ୍ଟା । ଏଥିରେ 'ବିଷ୍ଣୁର୍ବୈ ଯଜ୍ଞଃ' ଅର୍ଥାତ ଯଜ୍ଞ ବିଷ୍ଣୁଙ୍କର ରୂପ ସମାନ ବୋଲି ଦର୍ଶାଯାଇଛି । ଏଥିରେ ଅଗ୍ନି ଦେବତାଙ୍କ ଠାରୁ ବିଷ୍ଣୁଙ୍କ ଉଚ୍ଚ କୋଟୀର ଦେବତା ରୂପେ ସ୍ୱୀକାର କରାଯାଇଛି । ରୁଦ୍ରଙ୍କ ଜ୍ୟେଷ୍ଠ ତଥା ଶ୍ରେଷ୍ଠ ରୂପେ ଗଣନା କରାଯାଇଛି । ତାଙ୍କର ବିଭିନ୍ନ ନାମ ଯଥା— ଶିବ, ରୁଦ୍ର, ମହାଦେବ, ପଶୁପତି, ଉଗ୍ର, ଈଶାନ, ଭବ ଓ ଅଶନି ଆଦି ନାମର ଉତ୍ପତ୍ତି ବିଷୟ ବର୍ଣ୍ଣନା କରାଯାଇଛି ।

**ଶତପଥ ବ୍ରାହ୍ମଣ**— ଶତପଥ ବ୍ରାହ୍ମଣ ଏକ ପ୍ରାଚୀନ ବ୍ରାହ୍ମଣ ଗ୍ରନ୍ଥ । ଏଥିରେ ଏକ ଶତ ଅଧ୍ୟାୟ ଥିବାରୁ ଏହାକୁ ଶତପଥ ନାମ ଦିଆ ହୋଇଛି । ଏଥିରେ ୧୪କାଣ୍ଡ ଅଛି । ଶତପଥ ବ୍ରାହ୍ମଣ ଯଜୁର୍ବେଦ ସହ ସମ୍ପୃକ୍ତ । ଏଥିରେ ଅଗ୍ନିହୋତ୍ର, ପଞ୍ଚ ମହାଯଜ୍ଞ, ଦର୍ଶପୌର୍ଣ୍ଣମାସ, ଦେବଯଜ୍ଞ, ମନୁଷ୍ୟଯଜ୍ଞ, ଭୂତଯଜ୍ଞ, ପିତୃପିଣ୍ଡ ଯଜ୍ଞ, ପ୍ରାୟଶ୍ଚିତ୍ତ ଓ ଅଶ୍ୱମେଧ ଯଜ୍ଞର ବର୍ଣ୍ଣନା ମିଳେ । ଏଥିରେକାଶୀରାଜ, ଧୃତରାଷ୍ଟ୍ର, ଦୁଷ୍ୟନ୍ତ, ଭରତ, ଜନମେଜୟ ପ୍ରଭୃତି ରାଜା ଏବଂ ଆର୍ଯ୍ୟାବର୍ତ୍ତ, କୁରୁପାଞ୍ଚାଳ ଏବଂ ସୃଞ୍ଜୟର ଆଦିର ଉଲ୍ଲେଖ ମିଳେ । ଏଥିରେ ଅପସରାମାନଙ୍କର ସୌନ୍ଦର୍ଯ୍ୟ ଏବଂ ନୃତ୍ୟର ବର୍ଣ୍ଣନା ଅଛି । ଏଥିରେ ୩୩ ଦେବତା ସ୍ୱୀକୃତ ହୋଇଛନ୍ତି ଯଥା— ୮ବସୁ ୧୧ରୁଦ୍ର, ୧୨ଆଦିତ୍ୟ, ଆକାଶ, ପୃଥିବୀ । ଏଥିରେ କୁହାଯାଇଛି— ପତ୍ନୀବିହୀନ ପୁରୁଷ ଯଜ୍ଞକର୍ମ କରିବା ପାଇଁ ଉପଯୁକ୍ତ ନୁହେଁ, ('ଅଯଜ୍ଞୀୟୋ ବୈଷଯୋଽପତ୍ନୀକ') କାରଣ ପୁରୁଷ ଯେ ପର୍ଯ୍ୟନ୍ତ ପତ୍ନୀଗ୍ରହଣ କରି ସନ୍ତାନ ଉତ୍ପନ୍ନ ନ କରିଛି ସେ ପର୍ଯ୍ୟନ୍ତ ତାର ଶରୀର ପୂର୍ଣ୍ଣତା ଲାଭ କରେନାହିଁ । ଏଥିରୁ ବନ୍ଧନରୁ ମୁକ୍ତିର ଚିନ୍ତା କରାଯାଇଛି । ମୁକ୍ତିର ଅବସ୍ଥାରେ ଜୀବ ସଂକଳ୍ପମୟ ହୋଇଥାଏ ।

ଶୁକ୍ରନ୍ ଶୋଣଂ ଭବନ୍ତି···ଅହଂକାରେ ଭବନ୍ତି (ଶତପଥ ୧୪।୪।୨।୧୭) ଏଥିରେ ରେତ ବା ବୀର୍ଯ୍ୟକୁ 'ସୋମ' କୁହାଯାଇଛି । ଅନ୍ନକୁ ସୋମ କୁହାଯାଇଛି । ପ୍ରାଣକୁ ପ୍ରଜାପତି ବୋଲି ଉଲ୍ଲେଖ ଅଛି ।

**ତୈତ୍ତିରୀୟ ବ୍ରାହ୍ମଣ**—ଏହା କୃଷ୍ଣ ଯଜୁର୍ବେଦ ସହ ସଂପୃକ୍ତ । ଏଥିରେ ୩କାଣ୍ଡ ୨୫ ପ୍ରପାଠକ ଓ ୩୦୮ ଅନୁବାକ ଅଛି । ଏଥିରେ ଅଗ୍ନ୍ୟା-

ଧାନ, ଗବାମୟନ, ବାଜପେୟ, ସୋମ, ନକ୍ଷତ୍ରେଷ୍ଟି ତଥା ରାଜସୂୟର ବର୍ଣ୍ଣନା, ଅଗ୍ନିହୋତ୍ର, ଉପହୋମ, ସୌତ୍ରାମଣି ଆଦିର ବର୍ଣ୍ଣନା ଅଛି । ଏଥିରେ ଗୃହବର୍ଣ୍ଣ ଓ ଗୃହ ଆଶ୍ରମର କର୍ତ୍ତବ୍ୟ ବର୍ଣ୍ଣିତ ହୋଇଛି । ଏଥିରେ ପ୍ରଜାପତି, ସୋମ ତିନ ବେଦକୁ ପ୍ରଦାନ କରିଥିବା ବିଷୟ ବର୍ଣ୍ଣିତ । ପ୍ରଜାପତିଙ୍କର ଦୁଇ କନ୍ୟା ଶ୍ରଦ୍ଧା ଓ ସୀତା-ସାବିତ୍ରୀ ଥିଲେ । ସୋମ ଶ୍ରଦ୍ଧାଙ୍କୁ ବିବାହ କରିବାକୁ ଇଚ୍ଛା କରୁଥିବା ବେଳେ ସୀତା ସାବିତ୍ରୀ ସୋମଙ୍କୁ ବିବାହ କରିବାକୁ ଇଚ୍ଛା କରୁଥିଲେ । ପ୍ରଜାପତି ସୀତା ସାବିତ୍ରୀଙ୍କ ଭାଲରେ ଏକ ପ୍ରକାର ବଶୀକରଣ ଔଷଧ 'ସ୍ଥାଗରେ' ଲଗାଇବାରୁ ସୋମ ବଶୀଭୂତ ହୋଇ ସୀତାସାବିତ୍ରୀଙ୍କୁ ବିବାହ କଲେ । ବିବାହ ସମୟରେ ସୋମ ତିନ ବେଦକୁ ପ୍ରଦାନ କଲେ ।

'ଯେନ ସୂର୍ଯ୍ୟସ୍ତ ପତି ତେଜସେଦ୍ଧଃ ।
ନାବେଦ ବିନ୍ମନତେ ତଂ ବୃହନ୍ତମ୍' । (ତୈ. ବ୍ରା ୩।୧୨)

ଯେଉଁ ତେଜ ଦ୍ୱାରା ପ୍ରଦୀପ୍ତ ହୋଇ ସୂର୍ଯ୍ୟ ତପ୍ତ ହୋଇଥାଏ, ସେହି ମହାନ (ପ୍ରଭୁ)ଙ୍କୁ ସେ ବ୍ୟକ୍ତି ଜାଣେ ନାହିଁ ଯେ କି ବେଦକୁ ଜାଣେ ନାହିଁ ।

କୃଷ୍ଣ ଯଜୁର୍ବେଦର ଅଧ୍ୱର୍ଯ୍ୟୁ ବ୍ରାହ୍ମଣ ବା ମୈତ୍ରାୟଣୀ ବ୍ରାହ୍ମଣ, କଣ୍ଠଶ୍ରୀ ବ୍ରାହ୍ମଣ, ସତ୍ୟାୟନୀ ବ୍ରାହ୍ମଣ ଓ କାଠକ ବ୍ରାହ୍ମଣର ନାମୋଲ୍ଲେଖ ମିଳେ କିନ୍ତୁ ସେଗୁଡିକ ଦେଖିବାକୁ ମିଳେ ନାହିଁ ।

**ସାମବେଦୀୟ ତାଣ୍ଡ୍ୟ ବ୍ରାହ୍ମଣ**—ତାଣ୍ଡ୍ୟ ବ୍ରାହ୍ମଣ ସାମବେଦର କୌଥୁମ ଶାଖା ସହିତ ସମ୍ପୃକ୍ତ । ଏହା ୪୦ ଅଧ୍ୟାୟରେ ବିଭକ୍ତ । ତଣ୍ଡି ଋଷିଙ୍କର ବଂଶଜ ଓ ଶିଷ୍ୟଙ୍କ ଦ୍ୱାରା ପ୍ରବର୍ତ୍ତିତ ହେବାରୁ ଏହାର ଏପରି ନାମକରଣ ହୋଇଛି । ଏଥିରେ ଯଜ୍ଞ କର୍ମରେ ଉଦ୍‌ଗାତା ମାନଙ୍କର କର୍ତ୍ତବ୍ୟ ବର୍ଣ୍ଣିତ ହୋଇଛି ଏବଂ ଗୋଟିଏ ଦିନରୁ ଏକ ଶହ ଦିନ ବା ତଦ୍-ଊର୍ଦ୍ଧ୍ୱ ଦିନର ସୋମଯଜ୍ଞ କ୍ରିୟା କଳାପର ବର୍ଣ୍ଣନା ମିଳେ । 'ସୋମ'ର ନାମକରଣ ସୋମ ଦ୍ରଷ୍ଟା ଋଷିଙ୍କ ନାମାନୁସାରେ କରାଯାଇଛି— ବୈଖାନସ ଋଷିଙ୍କ ଦ୍ୱାରା ଦୃଷ୍ଟ ସୋମ ବୈଖାନସ, ଶର୍କର ଦୃଷ୍ଟ ସୋମ 'ଶାର୍କର', ଦ୍ୟୁତାନ ଋଷିଙ୍କ ଦ୍ୱାରା ଦୃଷ୍ଟ ସୋମ 'ଦ୍ୟୁତାନ'

ବୋଲି କୁହାଯାଇଛି । ଏଥିରେ କେତେକ ଭୌଗଳିକ ବିବରଣୀ ମିଳେ— କୋଶଳ ରାଜା 'ପରମାସା' ଓ ବିଦେହ ରାଜ 'ନମିସାପ୍ୟ'ଙ୍କର ଆଖ୍ୟାନ ଏଥିରେ ବର୍ଣ୍ଣିତ । ସନ୍ତାନ ଉତ୍ପତ୍ତି ପାଇଁ ଅପ୍‌ସରମାନଙ୍କୁ ପ୍ରାର୍ଥନା ତାଣ୍ଡ୍ୟ-ବ୍ରାହ୍ମଣରେ ବର୍ଣ୍ଣନା କରାଯାଇଛି ।

ଅନ୍ୟାନ୍ୟ ସାମବେଦୀୟ ବ୍ରାହ୍ମଣ ମଧ୍ୟରେ ଷଡ଼ବଂଶ ବ୍ରାହ୍ମଣ ଏଥିରେ ୫ଟି ପ୍ରପାଠକ ଅଛି ଏବଂ ଏଥିରେ ଭୂକମ୍ପ, କୃଷିନାଶ, ଅକାଳରେ ଫଳଫୁଲ ଉତ୍ପତ୍ତି ବିଷୟ ବର୍ଣ୍ଣିତ । ସାମବିଧାନ ବ୍ରାହ୍ମଣ ପରବର୍ତ୍ତୀ କାଳର ରଚନା, ଏଥିରେ ବ୍ରତ ଉପାସନା, ଇନ୍ଦ୍ରଜାଲ ବିଦ୍ୟା; ଶତ୍ରୁର ନିଧନ ପାଇଁ ସାମବିଧାନ ଗନ୍ଧର୍ବ, ଦେବତା ଓ ଭୂତ ପ୍ରେତାଦିଙ୍କର ପ୍ରତ୍ୟକ୍ଷୀକରଣ ନିମିତ୍ତ ସାମବିଧାନ ବର୍ଣ୍ଣିତ । ଆର୍ଷେୟ ବ୍ରାହ୍ମଣ ୩ ପ୍ରପାଠକ ଓ ୮୨ ଖଣ୍ଡରେ ବିଭକ୍ତ । ଏଥିରେ ସାମଗାନର ବୈଜ୍ଞାନିକ ବିଶ୍ଳେଷଣ ଗୁରୁତ୍ୱ ପୂର୍ଣ୍ଣ । ଦୈବତ ବ୍ରାହ୍ମଣ ତିନି ଖଣ୍ଡରେ ବିଭକ୍ତ ଏବଂ ଏହା କ୍ଷୁଦ୍ରତମ ବ୍ରାହ୍ମଣ ଗ୍ରନ୍ଥ । ଏଥିରେ ଦେବତା ମାନଙ୍କର ଏବଂ ଛନ୍ଦର ନାମକରଣ ବୈଜ୍ଞାନିକ ଉପାୟରେ ହୋଇଛି । ଉପନିଷଦ୍ ବ୍ରାହ୍ମଣ ୧୦ ପ୍ରପାଠକ ଅଛି । ଏଥିରେ ଶଙ୍କରାଚାର୍ଯ୍ୟଙ୍କ ମନ୍ତ୍ର ବ୍ରାହ୍ମଣ ଓ ଛାନ୍ଦୋଗ୍ୟ ଉପନିଷଦର ଉଲ୍ଲେଖ ମିଳେ । ସଂହିତୋପନିଷଦ୍ ବ୍ରାହ୍ମଣରେ ସାମଗାୟନର ଫଳ ବର୍ଣ୍ଣିତ । ବଂଶ ବ୍ରାହ୍ମଣରେ ସାମବେଦ ଆଚାର୍ଯ୍ୟ ମାନଙ୍କର ବଂଶ ପରମ୍ପରା ବର୍ଣ୍ଣିତ । ଜୈମିନୀୟ ବ୍ରାହ୍ମଣରେ ଶତପଥପରି ଯଜ୍ଞାନୁଷ୍ଠାନର ବର୍ଣ୍ଣନାମିଳେ ।

**ଅଥର୍ବ ବେଦୀୟ-ଗୋପଥ ବ୍ରାହ୍ମଣ—** ଗୋପଥ ବ୍ରାହ୍ମଣ ଅଥର୍ବ ବେଦର ଏକମାତ୍ର ବ୍ରାହ୍ମଣ । ଗୋପଥ ଋଷିଙ୍କ ନାମାନୁସାରେ ଏହା ଗୋପଥ ବ୍ରାହ୍ମଣ ହୋଇଛି । ଏଥିରେ ୨ କାଣ୍ଡ ବା ଖଣ୍ଡ ଏବଂ ୧୧ ଅଧ୍ୟାୟ ବା ପ୍ରପାଠକ ବିଦ୍ୟମାନ । ଏଥିରେ ଗାୟତ୍ରୀର ମହିମା କୀର୍ତ୍ତନ, ବ୍ରହ୍ମଚର୍ଯ୍ୟର ନିୟମ ଏବଂ ପ୍ରତ୍ୟେକ ବେଦ ପାଇଁ ୧୨ ବର୍ଷ ଧାର୍ଯ୍ୟ କରାଯାଇଛି । ପୁରୁଷମେଧ, ଅଶ୍ୱମେଧ, ଅଗ୍ନିଷ୍ଟୋମ ଏବଂ ଯଜ୍ଞ ସମ୍ବନ୍ଧୀୟ ଉପାଖ୍ୟାନର ଉଲ୍ଲେଖ ଅଛି । ଏଥିରେ ଅଥର୍ବ ବେଦରୁ ତିନିବେଦ ଏବଂ ଓଁକାର ଉତ୍ପତ୍ତି ଲାଭ କରିଥିବା କୁହାଯାଇଛି ଏବଂ ଅଥର୍ବ ବେଦ ପଢ଼ି ସାରିଲା ପରେ ଅନ୍ୟବେଦ ପଢ଼ିବା ପାଇଁ କୁହାଯାଇଛି । ଦେବଋଣ ଓ ପିତୃଋଣ ପରିଶୋଧ କରିବା ପାଇଁ ପୁରୁଷ ଏକାଧିକ ବିବାହ କରିବା ପାଇଁ କୁହାଯାଇଛି । ଏଥିରେ ଭୌଗଳିକ ପାଞ୍ଚାଳ, ଅଙ୍ଗ, ମଗଧ ଦେଶର ନାମ ଉଲ୍ଲେଖ ଅଛି ।

**ଆରଣ୍ୟକ**— ଅରଣ୍ୟ ମଧ୍ୟରେ ବାନପ୍ରସ୍ଥୀମାନେ ବ୍ରହ୍ମଚର୍ଯ୍ୟ ରକ୍ଷାକରି ଯେଉଁ ଯଜ୍ଞକର୍ମ ସମ୍ପାଦନ କରୁଥିଲେ ସେହି ବିଷୟ ସମ୍ବଳିତ ଗ୍ରନ୍ଥକୁ ଆରଣ୍ୟକ କୁହାଯାଏ । ସାୟଣାଚାର୍ଯ୍ୟ କହିଛନ୍ତି ବନରେ ପଠିତ ହେଉଥିବାରୁ ସେ ଗ୍ରନ୍ଥର ନାମ ଆରଣ୍ୟକ ବ୍ରାହ୍ମଣ ଗ୍ରନ୍ଥର ଯଜ୍ଞ ଗୃହସ୍ଥ ମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବାବେଳେ ଆରଣ୍ୟକର ଯଜ୍ଞ ବାନପ୍ରସ୍ଥୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହା ବାନପ୍ରସ୍ଥ ଆଶ୍ରମରେ ଜୀବନ ଯାପନ କରୁଥିବା ବ୍ୟକ୍ତିଙ୍କ ପାଇଁ ଉପାଦେୟ ଗ୍ରନ୍ଥ । ଆରଣ୍ୟକମାନଙ୍କର କର୍ମରୁ ଉତ୍ପନ୍ନ ଫଳ ପ୍ରତି ତଥା କର୍ମ ଫଳରେ ଅଶ୍ରଦ୍ଧା ଭାବ ଦେଖାଯାଏ । ଅଗ୍ନିରେ କୌଣସି ଦ୍ରବ୍ୟ ଦେବତାଙ୍କ ଲକ୍ଷ୍ୟରେ ପ୍ରଦାନ କରିବା ପ୍ରକୃତ ଯଜ୍ଞ ନୁହେଁ ବୋଲି ଆରଣ୍ୟକ ସ୍ୱୀକାର କରେ । ଜ୍ଞାନ ମାର୍ଗ ଉପରେ ଆରଣ୍ୟକ ଆକୃଷ୍ଟ ହେଲା । ଜ୍ଞାନ ଓ କର୍ମର ସମନ୍ୱୟ ଯାହା ଉପନିଷଦ କାଳରେ ପ୍ରଧାନ ରୂପେ ବର୍ଣ୍ଣିତ କରାଯାଇଛି ତାର ମୂଳଭିତ୍ତି ବ୍ରାହ୍ମଣ ଯୁଗରେ ତଥା ଆରଣ୍ୟକ ଗ୍ରନ୍ଥରେ ବିଦ୍ୟମାନ ।

ଆରଣ୍ୟକରେ ପ୍ରାଣବିଦ୍ୟା ବିଷୟ ଦିଆଯାଇଛି । ପ୍ରାଣ ସାରା ବିଶ୍ୱର ଧାରକ ରକ୍ଷକ । ଅନ୍ତରୀକ୍ଷ ଓ ବାୟୁ ପ୍ରାଣରୁ ଉତ୍ପନ୍ନ ହୋଇଛି । ବାକ୍ୟରେ ଅଗ୍ନି ଦେବତା ବାସ କରନ୍ତି, ଚକ୍ଷୁ ହେଉଛି ସୂର୍ଯ୍ୟ, ମନ ଚନ୍ଦ୍ରମା ଏବଂ ଶ୍ରୋତ୍ର ଦିଶ । ପ୍ରାଣରେ ଏହିସବୁ ଦେବତାଙ୍କୁ ଚିନ୍ତା କରିବା ଉଚିତ । ବୃହଦାରଣ୍ୟକରେ ଅଛି—

'ପ୍ରାଣସ୍ୟ ପ୍ରାଣମୁତ ଚକ୍ଷୁଷଶ୍ଚକ୍ଷୁରୁତ
ଶ୍ରୋତସ୍ୟ ଶ୍ରୋତ ମନ୍ନସ୍ୟାନ୍ନଂ ମନସୋ ଯେ ମନୋ ବିଦୁଃ'
(ବୃହ ୪।୪।୧୮)

'ଯେ ପ୍ରାଣରେ ପ୍ରାଣ, ନେତ୍ରର ନେତ୍ର, ଶ୍ରୋତର ଶ୍ରୋତ୍ର, ଅନ୍ନର ଅନ୍ନ ଓ ମନର ମନକୁ ଜାଣନ୍ତି' ।

ଋଷିମାନେ ପ୍ରାଣକୁ ଏହି ରୂପେ ଜାଣିଥିଲେ, ତେଣୁ ପ୍ରାଣକୁ ସେମାନେ ଦେବତା ରୂପେ ଉପାସନା କରୁଥିଲେ ।

**ଐତରେୟ ଆରଣ୍ୟକ**—ଏହା ଋଗ୍ବେଦ ସହିତ ସଂପୃକ୍ତ ଏବଂ ଐତରେୟ ବ୍ରାହ୍ମଣର ପରିଶିଷ୍ଟ ଏବଂ ପାଞ୍ଚ ଭାଗରେ ବିଭକ୍ତ । ଏଥିରେ

ଅଠରଟି ଅଧ୍ୟାୟ ଅଛି । ଏହି ଆରଣ୍ୟକର ପ୍ରଥମ ତିନି ଭାଗର ରଚୟିତା ଐତରେୟ, ଚତୁର୍ଥର ଆଶ୍ୱଳାୟନ ଏବଂ ପଞ୍ଚମର ରଚୟିତା ହେଉଛନ୍ତି ଶୌନକ ।

**ଶାଙ୍ଖାୟନ ଆରଣ୍ୟକ**—ଏହା ଋଗ୍ ବେଦ ସହିତ ସଂଯୁକ୍ତ ଏବଂ ୧୫ ଅଧ୍ୟାୟରେ ବିଭକ୍ତ । ଏହାକୁ କୌଷିତକୀ ଆରଣ୍ୟକ ମଧ୍ୟ କୁହାଯାଏ କାରଣ ଏହାର ୩ୟରୁ ୬ଷ୍ଠ ପର୍ଯ୍ୟନ୍ତ କେବଳ କୌଷିତକୀ ଉପନିଷଦ୍ । ଏଥିରେ ମତ୍ସ୍ୟ, କାଶୀ, ଉଶୀନର, କୁରୁ ପାଞ୍ଚାଳ ଓ ବିଦେହର ନାମୋଲ୍ଲେଖ ଅଛି ।

**ମାଧ୍ୟନ୍ଦିନ ବୃହଦାରଣ୍ୟକ ଓ କାଣ୍ୱ ବୃହଦାରଣ୍ୟକ**—ଏହା ଶୁକ୍ଳ ଯଜୁର୍ବେଦ ସହିତ ସଂଯୁକ୍ତ । ଏଥିରେ ଉପନିଷଦ୍ ଓ ଆରଣ୍ୟକ ମିଶ୍ରିତ ଭାବେ ବିଦ୍ୟମାନ । ଏହି ଦୁଇ ଆରଣ୍ୟକରେ ଯାଜ୍ଞବଲ୍କ୍ୟ ଓ ଜନକଙ୍କ ଆଖ୍ୟାୟିକା ମିଳେ । ବ୍ରହ୍ମବାଦିନୀ ଗାର୍ଗୀ ଓ ଓ ମୈତ୍ରେୟୀ ନାମକ ସ୍ତ୍ରୀଙ୍କର ବିବରଣୀ ଉଲ୍ଲେଖ ଅଛି । ବ୍ରହ୍ମ ଲୋକକୁ ଯିବା ପାଇଁ ସନ୍ୟାସ ମାର୍ଗ ଏଥିରେ ବର୍ଣ୍ଣିତ । କୃଷ୍ଣ ଯଜୁର୍ବେଦର ଏକ ଆରଣ୍ୟକ ମିଳେ, ତାହା ମୈତ୍ରାୟଣୀୟ ଉପନିଷଦ୍ ନାମରେ ନାମିତ ।

**ତୈତ୍ତିରୀୟ ଆରଣ୍ୟକ**—ତୈତ୍ତିରୀୟ ବ୍ରାହ୍ମଣର ଶେଷ ଅଂଶ ହେଉଛି ତୈତ୍ତିରୀୟ ଆରଣ୍ୟକ । ଏଥିରେ ୧୦ଟି ପ୍ରପାଠକ ଓ ୧୭୦ଟି ଅନୁବାକ ଅଛି । ଏଥିରେ କୁରୁକ୍ଷେତ୍ର ଓ ଖାଣ୍ଡବ ବନର ବର୍ଣ୍ଣନା ଏବଂ ଜଳର ମୂଳ ଚାରିଟି ରୂପ—ମେଘ, ବିଦ୍ୟୁତ୍, ଗର୍ଜନ ଓ ବର୍ଷାର ଉଲ୍ଲେଖ ଅଛି । ଏଥିରେ ପ୍ରଥମ ଥର ପାଇଁ ଯଜ୍ଞ ଉପବୀତର ବର୍ଣ୍ଣନା ଦେଖିବାକୁ ମିଳେ ।

## ଉପନିଷଦ୍—

ଉପନିଷଦ୍‌ର ମୁଖ୍ୟ ଅର୍ଥ ବ୍ରହ୍ମବିଦ୍ୟା । ଉପନିଷଦ ଶବ୍ଦ ଉପ ଓ ନି ଉପସର୍ଗ ସଦ ଧାତୁରୁ କ୍ୱିପ ପ୍ରତ୍ୟୟ ହୋଇ ନିଷ୍ପନ୍ନ ହୋଇଛି । ସଦ୍ ଧାତୁର ତିନି ପ୍ରକାର ଅର୍ଥ—ବିଶରଣ (ନାଶ ହେବା), ଗତି (କୌଣସି ପଦାର୍ଥ ପ୍ରାପ୍ତ ହେବା) ଓ ଅବସାଦନ (ଶିଥିଳ କରିବା) । ଉପନିଷଦର ଅର୍ଥ

ଅଧ୍ୟାତ୍ମବିଦ୍ୟା—ଯେଉଁ ବିଦ୍ୟା ଅଧ୍ୟୟନ କରିବା ଦ୍ୱାରା ଦୁଃଖ ଓ ଅବିଦ୍ୟା ନଷ୍ଟ ହୁଏ ଏବଂ ଅମରତ୍ୱ ପ୍ରାପ୍ତ କରାଏ । ଉପନିଷଦର ମୂଳ ଅର୍ଥ ହେଉଛି ଗୁରୁ ସମୀପରେ ଶିଷ୍ୟର ଅବସ୍ଥାନ ଅର୍ଥାତ୍ ଜ୍ଞାନ ପ୍ରାପ୍ତି । ଉପନିଷଦକୁ ମଧ୍ୟ 'ରହସ୍ୟମ୍' କୁହାଯାଇଛି ଯାହାର ଅର୍ଥ ହେଉଛି ପ୍ରଚ୍ଛନ୍ନ ।

ପ୍ରାଚୀନ କାଳରେ ପ୍ରତ୍ୟେକ ବୈଦିକ ଶାଖାର ନିଜ ନିଜର ଉପନିଷଦ ଥିଲା । ମୁକ୍ତିକୋପନିଷଦ୍ ଅନୁସାରେ ଉପନିଷଦର ସଂଖ୍ୟା ହେଉଛି ୧୦୮ । ଏଥିରୁ ଋଗ୍‌ବେଦ ସହିତ ସମ୍ପୃକ୍ତ ଉପନିଷଦର ସଂଖ୍ୟା ହେଉଛି ୧୦, ଶୁକ୍ଳ ଯଜୁର୍ବେଦୀୟ ଉପନିଷଦ ହେଉଛି ୧୯, କୃଷ୍ଣ ଯଜୁର୍ବେଦ ସହିତ ସମ୍ପୃକ୍ତ ୩୨ଟି, ସାମ ବେଦୀୟ ୧୬ଟି ଓ ଅଥର୍ବ ବେଦ ସହିତ ସମ୍ପୃକ୍ତ ୩୧ଟି । ମାନ୍ଦ୍ରାଜର (ତାମିଲନାଡ଼ୁ)ର ଆଡ୍ୟାର ଲାଇବ୍ରେରୀରେ ଥିବା ଅପ୍ରକାଶିତ ୬୦ଟି ଉପନିଷଦ୍ ଆଡ୍ୟାର (ମାଡ଼୍ରାସ)ର ଥିଓସଫିକାଲ ସୋସାଇଟି ଏହି ଅପ୍ରକାଶିତ ଉପନିଷଦ୍‌ର ଏକ ସଂଗ୍ରହ ପ୍ରକାଶ କରିଥିଲେ । ଏଥିରୁ କତିପୟ ବାଦଶାହ ସାହାଜାହାନଙ୍କ ଜ୍ୟେଷ୍ଠ ପୁତ୍ର ଫରାସୀ ଭାଷାରେ ସପ୍ତଦଶ ଶତାବ୍ଦୀରେ ଅନୁବାଦ କରିଥିଲେ ।

ଋଗ୍‌ବେଦୀୟ ଉପନିଷଦ—ଐତରେୟ ତଥା କୌଷୀତକି, ସାମ ଉପନିଷଦ୍ ମାନଙ୍କରେ— ଛାନ୍ଦୋଗ୍ୟ ତଥା କେନ, କୃଷ୍ଣ ଯଜୁଃ ଉପନିଷଦ୍ ମାନଙ୍କରେ —ତୈତ୍ତିରୀୟ ମହାନାରାୟଣ, କଠ, ଶ୍ୱେତାଶ୍ୱତର, ମୈତ୍ରାୟଣୀ, ଶୁକ୍ଳ ଯଜୁର୍ବେଦର—ଈଶାବାସ୍ୟ ଉପନିଷଦ୍ ତଥା ବୃହଦାରଣ୍ୟକ ଉପନିଷଦ, ଅଥର୍ବ ଉପନିଷଦର— ମୁଣ୍ଡକ, ମାଣ୍ଡୁକ୍ୟ ତଥା ପ୍ରଶ୍ନ ଉପନିଷଦ ଅତ୍ୟନ୍ତ ପ୍ରାମାଣିକ ଓ ପ୍ରସିଦ୍ଧ । ଶଙ୍କରାଚାର୍ଯ୍ୟ ଯେଉଁ ଦଶଟି ଉପନିଷଦ୍ ଉପରେ ଭାଷ୍ୟ ରଚନା କରିଛନ୍ତି ସେହି ଉପନିଷଦ୍‌ର ନାମ ହେଉଛି—

"ଈଶ-କେନ-କଠ-ପ୍ରଶ୍ନ-ମୁଣ୍ଡ-ମାଣ୍ଡୁକ୍ୟ-ତିତ୍ତିରିଃ
ଐତରେୟଂ-ଚ-ଛାନ୍ଦୋଗ୍ୟଂ ବୃହଦାରଣ୍ୟକଂ ଦଶ ।"*

ବଳଦେବ ଉପାଧ୍ୟାୟ ଭାରତୀୟ ଦର୍ଶନରେ ଏହାର ସଂଖ୍ୟା ୧୧ଟି ବୋଲି ଦର୍ଶାଇଛନ୍ତି— ଯଥା — ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଐତରେୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ ତଥା ନୃସିଂହ ପୂର୍ବତାପିନୀ ।

ପଦ୍ୟମୟ ଉପନିଷଦ ମାନଙ୍କ ମଧ୍ୟରେ ଶ୍ୱେତାଶ୍ୱତର, ମହା-ନାରାୟଣ, କଠ ଓ ଈଶୋପନିଷଦ୍ । ଗଦ୍ୟମୟ ଉପନିଷଦ୍ ମାନଙ୍କ ମଧ୍ୟରେ ଐତରେୟ, ତୈତ୍ତିରୀୟ କେନ, କୌଷୀତକି, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ପ୍ରଶ୍ନ ମୈତ୍ରୀ, ମୈତ୍ରାୟଣୀ ଓ ମାଣ୍ଡୁକ୍ୟ । ଉପନିଷଦ ମାନଙ୍କର ରଚନା କାଳ ବିଷୟରେ ଆଲୋଚକଙ୍କର ମତଭେଦ ଦେଖାଯାଏ—ଲୋକମାନ୍ୟ ତିଳକଙ୍କଙ୍କ ମତାନୁସାରେ ପ୍ରାଚୀନ ପ୍ରଧାନ ଉପନିଷଦ ଖ୍ରୀ. ପୂ. ୧୫୦୦ ପୂର୍ବରୁ ରଚିତ ହୋଇଥିଲା କିନ୍ତୁ ପାଶ୍ଚାତ୍ୟ ବିଦ୍ୱାନଙ୍କ ମତରେ ଏହା ଖ୍ରୀ. ପୂ. ୬୦୦ କିମ୍ବା ଖ୍ରୀ.ପୂ. ୪୦୦ ମଧ୍ୟର ରଚନା ।

ଉପନିଷଦ ମାନଙ୍କର ପ୍ରତିପାଦ୍ୟ ସିଦ୍ଧାନ୍ତକୁ ନେଇ ଭାରତୀୟ ଦାର୍ଶନିକ ମାନେ ବିଭିନ୍ନ ବିଚାର କରିଛନ୍ତି । ଏହାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ହେଲା ଆତ୍ମାସିଦ୍ଧାନ୍ତ, ବ୍ରହ୍ମ ସିଦ୍ଧାନ୍ତ । ଅନ୍ୟ ସିଦ୍ଧାନ୍ତ-ମାନ ହେଲା ପ୍ରାଣ ସିଦ୍ଧାନ୍ତ, ଆବାଗମନ ସିଦ୍ଧାନ୍ତ, କର୍ମ ସିଦ୍ଧାନ୍ତ ଓ ନୈତିକ ସିଦ୍ଧାନ୍ତ ।

**ଈଶ ଉପନିଷଦ୍**— ଯଜୁର୍ବେଦର ମାଧ୍ୟନ୍ଦିନ ଶାଖାର ୪୦ତମ ଅଧ୍ୟାୟ ହେଉଛି 'ଈଶୋପନିଷଦ' । ଏଥିରେ ଗୀତା ପରି ନିଷ୍କାମ କର୍ମ କରିବାକୁ କୁହାଯାଇଛି ଏବଂ ସତ୍ୟ ନିଷ୍ଠ ହେବାପାଇଁ କୁହାଯାଇଛି ।

"ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍

ତତ୍ତ୍ୱଂ ପୂଷନ୍ନପାବୃଣୁ ସତ୍ୟଧର୍ମାୟ ଦୃଷ୍ଟୟେ ।" (ଇଶୋପ. ମନ୍ତ୍ର୧୫)

ସୁବର୍ଣ୍ଣ ପାତ୍ର (ଅତ୍ୟନ୍ତ ଉଜ୍ଜ୍ୱଳମୟ ଓ ଆକର୍ଷଣ ନିଗୁଢାତ୍ମକ ଶରୀରମୟ ଓ ଜଗତ ମୟ ) ଦ୍ୱାରା ସତ୍ୟର ମୁଖ (ଶୁଦ୍ଧ ପରମାତ୍ମ-ତତ୍ତ୍ୱ) ଆଚ୍ଛାଦିତ ହୋଇଛି । ହେ ପୂଷନ୍ (ଆଦିତ୍ୟ ଅର୍ଥାତ୍ କାରଣ-ଜଗତର ଅଧିଷ୍ଠାତା ଈଶ୍ୱର) ସତ୍ୟ ଧର୍ମ (ଶୁଦ୍ଧ ପରମାତ୍ମାତତ୍ତ୍ୱ) କୁ ଦେଖିବା ପାଇଁ ତାକୁ ଦୂରେଇ ଦିଅ ।

**କେନ ଉପନିଷଦ୍**—ଏହା ଚାରି ଖଣ୍ଡରେ ବିଭକ୍ତ । ଏଥିରେ ଇନ୍ଦ୍ରିୟ ସାହାଯ୍ୟରେ ବ୍ରହ୍ମର ଅବଧାରଣା ସମ୍ଭବ ନୁହେଁ ବୋଲି ଦର୍ଶାଯାଇଛି—

"ନ ତତ୍ର ଚକ୍ଷୁର୍ଗଚ୍ଛତି ନ ବାଗ୍ ଗଚ୍ଛତି ନୋ ମନୋ ନ ବିଦ୍ମୋ ।
ନ ବିଜାନୀମୋ ଯଥୈତଦନୁଶିଷ୍ୟାତ୍, ଅନ୍ୟ ଦେବତଦ୍ ବିଦିତାଦଥୋ
ଅବିଦିତାଦଧି, ଇତି ଶୁଶ୍ରୁମ ପୂର୍ବେଷାଂ ଯେ ନସ୍ତଦ୍ ବ୍ୟାଚଚକ୍ଷିରେ ।"
(୧।୩)

'ସେଠାରେ ଚକ୍ଷୁ ପହଞ୍ଚିପାରେ ନାହିଁ କି ବାଣୀ ପହଞ୍ଚେ ନାହିଁ, ମନ ବି ପହଞ୍ଚେ ନାହିଁ, ବୁଝେ ନାହିଁ କି ଜାଣେ ନାହିଁ, ଅର୍ଥାତ୍ ଯେଉଁପରି ଭାବରେ ଏହି ବ୍ରହ୍ମୋପଦେଶ କରିବା ଆବଶ୍ୟକ, ତାହା ଆମ୍ଭେ ଜାଣୁ ନାହିଁ— ତାହାକୁ ଆମ୍ଭେ ବୁଝିପାରୁ ନାହିଁ । ସେ ବିଦିତରୁ ଅନ୍ୟ ଅଟେ ତଥା ଅବିଦିତରୁ ମଧ୍ୟ ସ୍ୱତନ୍ତ୍ର ଅଟେ—ଏପରି ଆମ୍ଭେ ପୂର୍ବ ପୁରୁଷଙ୍କ ଠାରୁ ଶୁଣିଅଛୁ, ଯେଉଁମାନେ କି ଆମ୍ଭମାନଙ୍କ ପ୍ରତି ତାହାର ବ୍ୟାଖ୍ୟାନ କରିଥିଲେ ।

ବ୍ରହ୍ମ ସର୍ବବ୍ୟାପକ ଓ ଏକମାତ୍ର ତତ୍ତ୍ୱ ରୂପେ କେନ ଉପନିଷଦ୍‌ରେ ପ୍ରତିପାଦିତ ହୋଇଛି ।

**କଠ ଉପନିଷଦ** —ଏହା କୃଷ୍ଣ ଯଜୁର୍ବେଦ ସହ ସଂପୃକ୍ତ । ଏହା ଦୁଇଟି ଅଧ୍ୟାୟ ଓ ୬ଟି ବଲ୍ଲୀରେ ବିଭକ୍ତ ହୋଇ ନଚିକେତାଙ୍କର ଯମରାଜାଙ୍କ ଠାରୁ ଆତ୍ମଜ୍ଞାନ ପ୍ରାପ୍ତି ବିଷୟ ବର୍ଣ୍ଣିତ ହୋଇଛି । ଏଥିରେ ମହର୍ଷି ବାଜଶ୍ରବା ବିଶ୍ୱଜିତ ଯଜ୍ଞର ସମାପ୍ତି ପରେ ଋତ୍ୱିକଙ୍କୁ ଦୁର୍ବଳ ଗାଇ ଦକ୍ଷିଣା ଦେଇ ଅପଯଶ ପାଇଲେ । ତାଙ୍କର ପୁତ୍ର ନଚିକେତା ତାଙ୍କର ପିତାଙ୍କୁ ପଚାରିଲେ, "ଆପଣ ମୋତେ କାହାକୁ ପ୍ରଦାନ କରିବେ ।" ଏହା ବାରମ୍ବାର କହିବାରୁ ବାଜଶ୍ରବା 'ମୁଁ ତୋତେ ଯମରାଜାଙ୍କୁ ଦେବି ବୋଲି କହିଲେ ।' ନଚିକେତା ଯମରାଜାଙ୍କର ସଂଯମନୀ ନଗରୀରେ ଯମ ରାଜାଙ୍କୁ ନ ପାଇ ତିନି ଦିନ ଅପେକ୍ଷା କଲେ । ଯମରାଜ ଜାଣିପାରିଲେ ଯେ ନଚିକେତା ପିତାଙ୍କ ଆଜ୍ଞାପାଳ ବିନା ନିମନ୍ତ୍ରଣରେ ଯମାଳୟକୁ ଆସିଛନ୍ତି । ତେଣୁ ସେ ତାଙ୍କୁ ତିନୋଟି ବର ମାଗିବାକୁ ଅନୁରୋଧ କଲେ । ନଚିକେତା ପ୍ରଥମ ବରରେ ପିତାଙ୍କ କ୍ରୋଧ ଶାନ୍ତ ହେବାକୁ ଏବଂ ସେ ପିତାଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରିବାକୁ ମାଗିଲେ । ଦ୍ୱିତୀୟ ବରେ ଅଗ୍ନି ବିଦ୍ୟାକୁ ମାନବ ସମାଜ ପାଇଁ ପ୍ରକାଶ କରିବାକୁ ଏବଂ ବେଦିର ରଚନା ଓ ଆବଶ୍ୟକୀୟ ଇଟାର ପରିମାଣ ଇତ୍ୟାଦି ବୁଝାଇ ଦେବାକୁ କହିଲେ । ତୃତୀୟ ପ୍ରଶ୍ନରେ ମୃତ୍ୟୁର ରହସ୍ୟ ଜାଣିବାକୁ ଇଚ୍ଛା ପ୍ରକାଶ କଲେ । ଭୌତିକ ଶରୀରରୁ ପ୍ରାଣବାୟୁ ବାହାରି ଗଲାପରେ ଜୀବନର ଅବସାନ ଘଟେ କି ? ଆତ୍ମା ଅମର । ଅଗ୍ନି ଯେପରି ଭିନ୍ନ ଭିନ୍ନ ପଦାର୍ଥକୁ ନେଇ ଭିନ୍ନ ଭିନ୍ନ ରୂପ ଧାରଣ କରେ ଆତ୍ମା ସେହିପରି । ଆତ୍ମଦର୍ଶନ ପାଇଁ ଯୋଗ ସାଧନ ଉତ୍କୃଷ୍ଟ ଉପାୟ—

"ଅଗ୍ନି ର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ॥
ବାୟୁ ର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
"ଏକସ୍ତଥା ସର୍ବ ଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପେ ବହିଶ୍ଚ ॥"
(କଠ ୨।୨।୯-୧୦)

ଯେପରି ଏକ ଅଗ୍ନି ନାନାବିଧ ଭୁବନରେ ପ୍ରବେଶ କରି ସେମାନଙ୍କର ପ୍ରତିରୂପ ହେଉଅଛି, ସେହିପରି ସର୍ବଭୂତଙ୍କର ଏକ ଅନ୍ତରାତ୍ମା ନାନା ପ୍ରକାର ରୂପରେ ସେମାନଙ୍କ ପରି ରୂପାନ୍ୱିତ ହେଉଅଛି ଓ ତାଙ୍କର ବାହାରେ ମଧ୍ୟ ଅଛି । ସେହିପରି ଭାବରେ ଏକ ବାୟୁ ନାନାବିଧ ଭୁବନରେ ପ୍ରବିଷ୍ଟ ହୋଇ ତାଙ୍କର ପ୍ରତିରୂପ ହେଉଅଛି, ସେହିପରି ସକଳ ଭୂତର ଏକ ଅନ୍ତରାତ୍ମା ନାନା ପ୍ରକାର ରୂପରେ ରୂପାନ୍ୱିତ ହେଉଛି ଏବଂ ସେମାନଙ୍କର ବାହାରେ ମଧ୍ୟ ଅଛି ।" କଠ ଉପନିଷଦର କେତେକ ମନ୍ତ୍ର ଗୀତାରେ ସାମାନ୍ୟ ପରିବର୍ତ୍ତିତ ହୋଇ ସ୍ଥାନ ପାଇଛି ।

**ପ୍ରଶ୍ନୋପନିଷଦ୍**—ଏଥିରେ ଶିଷ୍ୟମାନଙ୍କର ପ୍ରଶ୍ନର ଉତ୍ତର ଗୁରୁ ପ୍ରଦାନ କରିଥିବାରୁ ଏହାର ନାମକରଣ ଏପରିଭାବରେ ହୋଇଛି । ଏହା ଅଥର୍ବ ବେଦର ପୈପ୍‌ପଲାଦ ଶାଖାର ଉପନିଷଦ୍ । ଏଥିରେ ପିପ୍‌ପଲାଦ ଋଷି ଛଅଜଣ ଶିଷ୍ୟ ସୁକେଶା, ସତ୍ୟକାମ, ସୌର୍ଯ୍ୟାୟଣୀ, ଭାର୍ଗବ, ଆଶ୍ୱଲାୟନ ଓ କବନ୍ଧୀଙ୍କୁ ବ୍ରହ୍ମଜ୍ଞାନ ଛଟି ପ୍ରଶ୍ନ ଉତ୍ତର ଛଳରେ ଦେଇଛନ୍ତି । ଏଥିରେ ଓଁକାର ଉପାସନା, ଷୋଡ଼ଶକଳା ସମ୍ପନ୍ନ ପୁରୁଷ ବିଷୟକ ପ୍ରଶ୍ନ ଓ ଅକ୍ଷର ବ୍ରହ୍ମ ବିଦ୍ୟା ବିଷୟ ଆଲୋଚିତ ହୋଇଛି ।

**ମୁଣ୍ଡକ ଉପନିଷଦ୍**— ଏହା ଅଥର୍ବ ବେଦ ସହିତ ସମ୍ପୃକ୍ତ । ଏହା ତିନି ମୁଣ୍ଡକ ଓ ଛଅ ଖଣ୍ଡରେ ବିଭକ୍ତ । ଏଥିରେ ବ୍ରହ୍ମା ନିଜପୁତ୍ର ଅଥର୍ବାଙ୍କୁ ଉପଦେଶ ପ୍ରଦାନ କରିଛନ୍ତି । ଅଥର୍ବା ଅଙ୍ଗିରଙ୍କୁ, ତାହା ପ୍ରଦାନ କରିଥିଲେ ତସ୍ୟ ଶିଷ୍ୟ ଭରଦ୍ୱାଜ ତସ୍ୟ ଶିଷ୍ୟ ଅଙ୍ଗିରସ ଏବଂ ତସ୍ୟ ଶିଷ୍ୟ ଶୌନକ ଋଷି ମଧ୍ୟ ଉକ୍ତବିଦ୍ୟାଲାଭ କରିଥିଲେ । ଏଥିରେ କର୍ମ କାଣ୍ଡର ଦୋଷ ଓ ହୀନତା ପ୍ରଦର୍ଶିତ ହୋଇଛି । ଚିତ୍ତରେ ସଂସ୍କାର ନାଶରେ ନିବୃତ୍ତି ହୋଇ ଚିତ୍ତ

ଆପଣା କାରଣରେ ଲୀନହୋଇଗଲେ ପୁନଃ ବ୍ୟୁତ୍‌ଥାନକୁ ଫେରି ନ ଆସିବା ପାଇଁ ଶୁଦ୍ଧଚେତନ ସ୍ୱରୂପରେ ଅବସ୍ଥିତ ହୁଏ ।

"ଗତାଃ କଳାଃ ପଞ୍ଚଦଶ ପ୍ରତିଷ୍ଠା ଦେବାଶ୍ଚସର୍ବେ ପ୍ରତିଦେବତାସୁ ।
କର୍ମାଣି ବିଜ୍ଞାନମୟଶ୍ଚ ଆତ୍ମା ପରେଽବ୍ୟୟେ ସର୍ବ ଏକୀଭବନ୍ତି ॥
ଯଥାନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେଽସ୍ତଂ ଗଚ୍ଛନ୍ତି ନାମରୂପେ ବିହାୟ ।
ତଥା ବିଦ୍ୱାନ୍ନାମରୂପାଦ ବିମୁକ୍ତଃ ପରାତ୍ପରଂ ପୁରୁଷମୁପୈତି ଦିବ୍ୟମ୍ ॥"
(ମୁଣ୍ଡକ ୩।୨।୭।୮)

"ତାଙ୍କର ପନ୍ଦର କଳା ଆପଣା ଆପଣା କାରଣରେ ଚାଲିଯାଆନ୍ତି ଏବଂ ତାଙ୍କର ସକଳ ଇନ୍ଦ୍ରିୟ ଆପଣା ସଦୃଶ ଦେବତାଙ୍କଠାକୁ ଚାଲି ଯାଆନ୍ତି । ତାଙ୍କର କର୍ମ ଓ ବିଜ୍ଞାନମୟ ଆତ୍ମା ସବୁ ସେହି ଅବ୍ୟୟ ବ୍ରହ୍ମରେ ଏକ ହୋଇ ଯାଆନ୍ତି । ଯେଉଁପରି ଭାବରେ ପ୍ରବାହିତ ନଦୀସକଳ ଶେଷରେ ସମୁଦ୍ରରେ ବିଲୀନ ହୋଇ ଯାଆନ୍ତି, ଏବଂ ଆପଣାର ନାମ, ରୂପ, ବିସ୍ମୃତ ହୋଇଯାନ୍ତି । ସେହିପରି ଶୁଦ୍ଧ ନିର୍ଗୁଣ ବ୍ରହ୍ମର ଜ୍ଞାତା ନାମରୂପରୁ ସ୍ୱତନ୍ତ୍ର ହୋଇ ଯେଉଁ ପରାପର ଦିବ୍ୟ ପୁରୁଷ ଅଛି ତାହାହିଁ ପ୍ରାପ୍ତ ହୋଇଥାଏ ।

**ମାଣ୍ଡୁକ୍ୟ ଉପନିଷଦ୍** -- ଏହା ଅଥର୍ବ ବେଦୀୟ ଉପନିଷଦ । ଏହା ୧୨ଖଣ୍ଡ ବା ବାକ୍ୟରେ ବିଭକ୍ତ । ଏହା ସବୁଠାରୁ କ୍ଷୁଦ୍ରକାୟ । ଏହାର ଦ୍ୱିତୀୟ ମନ୍ତ୍ରରେ ଆତ୍ମା ଓ ବ୍ରହ୍ମ ଅଭିନ୍ନ ବୋଲି କୁହାଯାଇଛି । ଶୁଦ୍ଧ ଆତ୍ମ ସ୍ୱରୂପକୁ ତୁରୀୟ ବୋଲି କହିଛନ୍ତି । ମନୁଷ୍ୟର ଚାରି ଅବସ୍ଥା — ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ । ଜାଗ୍ରତରେ ଆତ୍ମା ବାହ୍ୟବସ୍ତୁମାନଙ୍କୁ ଅନୁଭବ କରେ, ସ୍ୱପ୍ନ ଦଶାରେ ଆଭ୍ୟନ୍ତର, ମାନସ ଜଗତକୁ ଅନୁଭବ କରେ । ସୁଷୁପ୍ତି ( ଘୋର ନିଦ୍ରିତାବସ୍ଥା ) ସେ ନିଜେ କେବଳ ଆନନ୍ଦ ସ୍ୱରୂପକୁ ଅନୁଭବ କରେ । ଏହା ଏକୀଭୂତ, ପ୍ରଜ୍ଞାନଘନ, ଆନନ୍ଦମୟ ଓ ଚେତୋମୁଖୀ ଚତୁର୍ଥ ଅବସ୍ଥାର ବର୍ଣ୍ଣନା ଅସମ୍ଭବ । ପୂର୍ଣ୍ଣ ଆତ୍ମାରେ ସେହିସବୁ ଗୁଣମାନଙ୍କର ଅଭାବ ଥାଏ, ଯାହାକି ପ୍ରଥମ ତିନି ଦଶାରେ ଉପଲବ୍‌ଧ ହୁଏ । ସେତେବେଳେ ବାହ୍ୟ ଚେତନା ନଥାଏ କି ଅନ୍ତଃଚେତନା ନଥାଏ ବା ଦୁହିଙ୍କର ସମ୍ମିଶ୍ରଣ ନଥାଏ ବା ପ୍ରଜ୍ଞା ନଥାଏ ବା ଅପ୍ରଜ୍ଞା ନଥାଏ । ଏପରି ଅବସ୍ଥାରେ ସକଳ ଶାନ୍ତ ରୂପରେ ରହେ । ଏହାକୁ ହିଁ ଶିବ, ଅଦ୍ୱୈତ ଆଦି ରୂପେ ବର୍ଣ୍ଣନା କରାଯାଇଛି ତାହା ହିଁ ଆତ୍ମା ।

ଓଁକାର ଦ୍ୱାରା ଆତ୍ମଜ୍ଞାନ ଲାଭ ସମ୍ଭବ ହୋଇଥାଏ । ଓଁକାର ତିନି ମାତ୍ରାରେ ଉଚ୍ଚାରିତ ହୋଇ ଥାଏ ଓ ତାହାର ଚତୁର୍ଥ ଅଂଶ ଅମାତ୍ର—

ଅମାତ୍ରଶ୍ଚତୁର୍ଥୋଽବ୍ୟବହାର୍ଯ୍ୟଃ ପ୍ରପଞ୍ଚୋପଶମଃ ଶିବୋଽଦ୍ୱୈତ

ଏବମୋଙ୍କାର ଆତ୍ମୈବ ସଂବିଶତ୍ୟାତ୍ମନାଽତ୍ମାନଂ ଯ ଏବଂ ବେଦ ।

(ମାଣ୍ଡୁକ୍ୟୋପନିଷଦ)

ଅମାତ୍ର (ଯାହାର କୌଣସି ମାତ୍ରା ନାହିଁ ତାହା ଓଁକାର)ର ଚତୁର୍ଥ ପାଦ ଯୁକ୍ତ ଅଟେ, ଯେ ବ୍ୟବହାରରେ ଲଗିବ ନାହିଁ, ଯେଉଁଠାରେ ପ୍ରପଞ୍ଚର କଳନ ନାହିଁ, ଯେ ଶିବ ଅଦ୍ୱୈତ ଅଟେ, ଏହିପରି ସ୍ୱତେ ଓଁ ଆତ୍ମା ହିଁ ଅଟେ । ସେହି ଯିଏ ଏହାକୁ ଜାଣନ୍ତି, ସେ ଆତ୍ମାରୁ ଆତ୍ମାରେ ପ୍ରବେଶ କରନ୍ତି ।

**ତୈତ୍ତିରୀୟ ଉପନିଷଦ**—ଏହା କୃଷ୍ଣ ଯଜୁର୍ବେଦୀୟ ଉପନିଷଦ । ଏଥିରେ ୩ ପ୍ରପାଠକ ଓ ୩୧ଟି ଅନୁବାକ ଅଛି । ପ୍ରପାଠକକୁ ବଲ୍ଲୀ ମଧ୍ୟ କୁହାଯାଏ । ଏଥିରେ ଶିକ୍ଷା ବଲ୍ଲୀ, ବ୍ରହ୍ମାନନ୍ଦ ବଲ୍ଲୀ ଓ ଭୃଗୁ ବଲ୍ଲୀ ଅଛି । ଏହି ଉପନିଷଦଟି ଛାତ୍ରମାନଙ୍କ ପାଇଁ କଣ୍ଠସ୍ଥ କରିବା ଯୋଗ୍ୟ । ଏଥିରେ ପ୍ରକୃତି ତ୍ରିଗୁଣାତ୍ମକ ବର୍ଣ୍ଣିତ ହୋଇଛି ।

"ସୋଽକାମୟତ । ବହୁ ସ୍ୟାଂ ପ୍ରଜାୟେୟେତି । ସ ତପୋଽତପ୍ୟତ । ସତପସ୍ତପ୍ତ୍ୱା । ଇଦଂ ସର୍ବମସୃଜତ ଯଦିଦଂ କିଞ୍ଚ । ତତ୍ ସୃଷ୍ଟ୍ୱା ତ ଦେବାନ ପ୍ରାବିଶତ୍ ॥"

(ତୈତ୍ତିରୀୟ ୨।୬।୧)

ସେ କାମନା କଲେ କି ମୁଁ ବହୁହେବି । ମୁଁ ପ୍ରଜାବାନ୍ ହେବି । ସେ ତପସ୍ୟା କଲେ । ତପସ୍ୟା ପରେ ସେ ଏହି ସକଳ ରଚନା କଲେ ଯାହାକି ବର୍ତ୍ତମାନ ଅଛି । ଏହାକୁ ରଚନା କରି ସେ ଏଥିରେ ପ୍ରବିଷ୍ଟ ହେଲେ । ଏହା ସ୍ପଷ୍ଟ ଅଟେ କି ଆପଣା ଆପେ ରଚନା କରିବା ଓ ଆପଣା ମଧ୍ୟରେ ଆପଣାକୁ ଆପେ ପ୍ରବେଶ କରିବା ଏ ଉଭୟ କଥା ଅସମ୍ଭବ ଅଟେ, କାରଣ ଏହି ଉଭୟ କ୍ରିୟା କର୍ତ୍ତାରୁ ଭିନ୍ନ କୌଣସି ଅନ୍ୟ ବସ୍ତୁର ଅପେକ୍ଷା ରଖିଥାଏ ଏବଂ ଏହାହିଁ ତ୍ରିଗୁଣାତ୍ମକ ପ୍ରକୃତି ଅଟେ ।

**ଐତରେୟ ଉପନିଷଦ**—ଏହା ଋଗ୍ ବେଦୀୟ ଉପନିଷଦ । ସୃଷ୍ଟିତତ୍ତ୍ୱରେ ପ୍ରଥମେ ଆତ୍ମା ବ୍ୟତୀତ କିଛି ନଥିଲା । ଆତ୍ମାର ଇଚ୍ଛାରୁ ଜଗତ କ୍ରମେ ଅନ୍ୟବସ୍ତୁ ସୃଷ୍ଟି ହୋଇଛନ୍ତି । ଜୀବର ଗର୍ଭ ପ୍ରବେଶ ପ୍ରଥମ ଜନ୍ମ,

ଗର୍ଭରୁ ବାହାରିବା ବିଷୟ ଜନ୍ମ ଏବଂ ନିଜର ସନ୍ତାନ ଉପରେ ଗୃହର ଦାୟିତ୍ୱ ଅର୍ପଣ କରି ଦେହତ୍ୟାଗ କରିବା ତୃତୀୟ ଜନ୍ମ । ତୃତୀୟ ଅଧ୍ୟାୟରେ ଆତ୍ମବିଷୟକ ଆଲୋଚନା ହୋଇଛି ।

**ଛାନ୍ଦୋଗ୍ୟ ଉପନିଷଦ**—ଏହା ସାମବେଦୀୟ ଉପନିଷଦ । ଏହା ୮ ଅଧ୍ୟାୟରେ ବିଭକ୍ତ । ପ୍ରଥମରୁ ଓଁକାର, ଉଦ୍‌ଗୀଥ ଓ ସାମର ବିସ୍ତୃତ ବ୍ୟାଖ୍ୟା ହୋଇଛି । ତୃତୀୟ ଅଧ୍ୟାୟରେ ଗାୟତ୍ରୀର ବର୍ଣ୍ଣନା, ଶ୍ରୀକୃଷ୍ଣ 'ଘୋର ଅଙ୍ଗିରସ' ଋଷିଙ୍କ ଠାରୁ ଧର୍ମୋପଦେଶ ଶ୍ରବଣ କରି କ୍ଷୁଧା ତୃଷ୍ଣାକୁ ଭୁଲି ଯାଇଥିଲେ । ୪ର୍ଥ ଅଧ୍ୟାୟରେ ସତ୍ୟକାମ ଜାବାଳ ଉପାଖ୍ୟାନ ବର୍ଣ୍ଣିତ ହୋଇଛି ଏବଂ ରାଜା ଜାନଶ୍ରୁତି ସଂବର୍ଗ ବିଦ୍ୟା ଓ ବାୟୁତତ୍ତ୍ୱ ବିଶାରଦ ଋଷି ରୈକ୍‌କଙ୍କ ଠାରୁ ବ୍ରହ୍ମଜ୍ଞାନ ଲାଭ କରିଥିବା କଥା ବର୍ଣ୍ଣିତ ହୋଇଛି । ପଞ୍ଚମ ଅଧ୍ୟାୟରେ ପ୍ରବାହଣ ଜୈବଳିଙ୍କର ଦାର୍ଶନିକ ସିଦ୍ଧାନ୍ତ ଓ କେକୟ ଅଶ୍ୱପତିଙ୍କ ସୃଷ୍ଟିତତ୍ତ୍ୱ ଆଲୋଚିତ ହୋଇଛି । ଷଷ୍ଠ ଅଧ୍ୟାୟରେ ଶ୍ୱେତକେତୁଙ୍କ ପ୍ରତି ଉଦ୍ଦାଳକ ଆରୁଣିଙ୍କ ଉପଦେଶ ବର୍ଣ୍ଣିତ ହୋଇଛି । ସ୍ୱାମୀ ବିବେକାନନ୍ଦ ଲଣ୍ଡନ ଠାରେ ନଭେମ୍ବର ୧୭ତାରିଖ ୧୮୯୭ମସିହାରେ ଯେଉଁ ଭାଷଣ ଦେଇଥିଲେ ସେଥିରେ ଛାନ୍ଦୋଗ୍ୟ ଉପନିଷଦ୍‌ର ଶ୍ୱେତକେତୁ ପଚାରିଥିବା 'ସତ୍ୟ' ବିଷୟର ବର୍ଣ୍ଣନା କରି ଶ୍ରୋତା ମାନଙ୍କୁ ମୁଗ୍‌ଧ କରିଦେଇଥିଲେ । "As a bee, O Shvetaketu, gathers honey from different flowers, and as the different honeys do not know that they are from various trees, and from various flowers, So all of us, having came to that Existence, know not that we have done so. Now, that which is that subtle essence, in It all that exists has its self. It is the True. It is the self, and thou, O Shvetaketu art That."★

୭ମ ଅଧ୍ୟାୟରେ ନାରଦ ସନତ କୁମାରଙ୍କ ଠାରୁ ନାମ, ବାକ୍ୟ, ମନ, ସଂକଳ୍ପ, ଚିତ୍ତ, ଧ୍ୟାନ ବିଜ୍ଞାନ, ସ୍ମରଣ, ଆଶା, ପ୍ରାଣ ଓ ବ୍ରହ୍ମଜ୍ଞାନ ଶିକ୍ଷା ଲାଭ କଥା ବର୍ଣ୍ଣନା ମିଳେ ଏବଂ ଅଷ୍ଟମ ଅଧ୍ୟାୟରେ ଆତ୍ମା, ବ୍ରହ୍ମ, ପ୍ରଜାପତି ପ୍ରଭୃତିର ଆଲୋଚନା ହୋଇଛି । ଯୋଗ ସାଧନ ବିଷୟରେ କୁହାଯାଇଛି—

★ Practical Vedanta— Swami Vivekananda.

ଶତଂ ଚୈକା ଚ ହୃଦୟସ୍ୟ ନାଡ୍ୟସ୍ତା ସାଂ ମୂର୍ଦ୍ଧାନ ମଭିନିଃ ସୃତୈକା ତୟୋର୍ଦ୍ଧ୍ୱ ମାୟନ୍ନମୃତ ତ୍ୱମେତି ବିଷ୍ୱଙ୍ଙନ୍ୟା ଉତ୍କ୍ରମଣେ ଭବନ୍ତ୍ୟୁତ୍କ୍ରମଣେ ଭବନ୍ତି ॥ (ଛାନ୍ଦୋଗ୍ୟ ୮।୬।୬)

ହୃଦୟରେ ଏକ ଶହ ଏକ ଗୋଟି ନାଡ଼ୀ ଅଛି । ସେଥି ମଧ୍ୟରୁ ଗୋଟିଏ (ସୁଷୁମ୍ନା ନାଡ଼ୀ) ମୂର୍ଦ୍ଧା ଦିଗକୁ ବାହାରି ଅଛି । ସେହି ନାଡ଼ୀରେ ଉପର ଗତି କରି (ଯୋଗୀ) ଅମୃତତ୍ୱ (ବ୍ରହ୍ମଲୋକକୁ ପ୍ରାପ୍ତ ହୋଇଥାଏ । ଅନ୍ୟାନ୍ୟ (ନାଡ଼ୀ ସମୂହ) ବାହାରିଲେ ଭିନ୍ନ ଭିନ୍ନ ଗତି (ପ୍ରଦାନ) କାରୀ ହୋଇଥାନ୍ତି ।

**ବୃହଦାରଣ୍ୟକ ଉପନିଷଦ୍**— ଏହା ଶୁକ୍ଳ ଯଜୁର୍ବେଦୀୟ ଉପନିଷଦ୍ । ଏଥିରେ ଛ'ଟି ଅଧ୍ୟାୟ ଅଛି । ପ୍ରଥମରେ ସୃଷ୍ଟି କର୍ତ୍ତା ବିଷୟରେ ଆଲୋଚନା କରାଯାଇଛି । ଦ୍ୱିତୀୟ ଅଧ୍ୟାୟରେ ଅଭିମାନୀ ଗାର୍ଗୀ ବାଳାକିଙ୍କର କାଶୀ ରାଜା ଅଜାତଶତ୍ରୁଙ୍କ ଠାରୁ ବ୍ରହ୍ମବିଦ୍ୟାର ଉପଦେଶ ଗ୍ରହଣ ବର୍ଣ୍ଣିତ ଅଛି । ଏହି ଅଧ୍ୟାୟରେ ଯାଜ୍ଞବଲ୍କ୍ୟ-ମୈତ୍ରେୟୀ ସଂବାଦ ଉପଲବ୍ଧ ହୁଏ । ଯାଜ୍ଞବଲ୍କ୍ୟଙ୍କର ଦୁଇ ପତ୍ନୀ କାତ୍ୟାୟନୀ ସରଳ ମୈତ୍ରେୟୀ ବ୍ରହ୍ମବାଦିନୀ ଥିଲେ । ଋଷି ସମସ୍ତ ସମ୍ପତ୍ତି ଦୁଇପତ୍ନୀଙ୍କୁ ବାଣ୍ଟି ଦେବାକୁ କହିବାରୁ ମୈତ୍ରେୟୀ କହିଥିଲେ, "ଯଦି ଏ ସମସ୍ତ ଭୂମଣ୍ଡଳକୁ ମୁଁ ସମ୍ପତ୍ତି ରୂପେ ପାଇବି ତେବେ କଣ ମୁଁ ଅମରତ୍ୱ ଲାଭ କରିବି ।" ଯାଜ୍ଞବଲ୍କ କହିଲେ "ନା ସମ୍ପତ୍ତି ଦ୍ୱାରା କେହି ଅମରତ୍ୱ ଲାଭ କରନ୍ତି ନାହିଁ କେବଳ ଧନାଢ୍ୟ ବ୍ୟକ୍ତିର ସ୍ଥିତିକୁ ଲାଭକରନ୍ତି ।" ତେଣୁ ମୈତ୍ରେୟୀ ଧନ ନଚାହିଁ ଚାହିଁଲେ ଅମରତ୍ୱର ଉପାୟ । ଯାଜ୍ଞବଲ୍କ କହିଥିଲେ ପତିପତ୍ନୀ ଓ ପୁତ୍ର କେହି କାହାରି ପାଇଁ ପ୍ରିୟ ନୁହନ୍ତି ସମସ୍ତେ ସ୍ୱାର୍ଥପାଇଁ ପ୍ରିୟ । ତେଣୁ ଆତ୍ମାର ଦର୍ଶନ, ମନନ, ନିଦିଧ୍ୟାସନ କରିବା ବାଞ୍ଛନୀୟ । ତୃତୀୟ ଅଧ୍ୟାୟରେ ଜନକ ରାଜାଙ୍କର ବିଶ୍ୱଜିତ ପରିଷଦରେ କୁରୁପାଞ୍ଚାଳ ଦେଶରୁ ପଣ୍ଡିତ ମାନଙ୍କ ଯୋଗଦାନ— କିଏ ବଡ଼ ବେଦଜ୍ଞ ଜାଣିବା ପାଇଁ ହଜାରେ ଗାଈଙ୍କର ଶିଙ୍ଗରେ ସୁନାଖଣ୍ଡିଏ କରିବା, ଯାଜ୍ଞବଲ୍କ ସବୁ ଗାଈ ନେଇଯିବା— ବ୍ରହ୍ମବାଦିନୀ ଗାର୍ଗୀ ମଧ୍ୟ ଯାଜ୍ଞବଲ୍କଙ୍କ ପ୍ରବଳ ଯୁକ୍ତିରେ ପରାସ୍ତ ହେବା ବର୍ଣ୍ଣିତ । ଚତୁର୍ଥ ଅଧ୍ୟାୟରେ ଜନକ ଓ ଯାଜ୍ଞବଲ୍କଙ୍କ ବ୍ରହ୍ମ ବିଷୟରେ ଆଲୋଚନା । ପଞ୍ଚମ ଅଧ୍ୟାୟରେ

ବ୍ରହ୍ମ, ପ୍ରଜାପତି, ଗାୟତ୍ରୀର ବର୍ଣ୍ଣନା । ଷଷ୍ଠ ଅଧ୍ୟାୟରେ ଜୈବଳି ଉଦ୍ଦାଳକ ଆରୁଣିଙ୍କୁ ବ୍ରହ୍ମବିଦ୍ୟାର ଉପଦେଶ ପ୍ରଦାନ ବର୍ଣ୍ଣିତ ହୋଇଛି ।

ଯୋ ଅକାମୋ ନିଷ୍କାମ ଆପ୍ତକାମ ଆତ୍ମକାମୋ ନ ତସ୍ୟ ପ୍ରାଣା
ଉତ୍କ୍ରାମନ୍ତି ବ୍ରହ୍ମୈବସନ୍ ବ୍ରହ୍ମାପ୍ୟେତି (ବୃହ ୪।୪।୬)

ଯେ କାମନା ରହିତ ଅଟେ, ଯେ କାମନାରୁ ବାହାରକୁ ବାହାରି ଆସିଛି,ଯାହାର କାମନା ପୂର୍ଣ୍ଣହୋଇ ଯାଇଅଛି ଅଥବା ଆତ୍ମା ଯାହାର କେବଳ କାମନା ଅଟେ, ତାହାର (ପ୍ରାଣ ଓ ଇନ୍ଦ୍ରିୟ) ବାହାରି ଯାଏ ନାହିଁ, ସେ ବ୍ରହ୍ମ ହୋଇ ବ୍ରହ୍ମଙ୍କ-ଠାରେ ପହଞ୍ଚି ଥାଏ ।

**ଶ୍ୱେତାଶ୍ୱତର ଉପନିଷଦ୍**— ଏହା କୃଷ୍ଣ ଯଜୁର୍ବେଦୀୟ ଉପନିଷଦ୍ । ଏହା ଛଅ ଅଧ୍ୟାୟରେ ବିଭକ୍ତ । ଯେପରି ତିଳକୁ ପେଷିଲେ ତେଲ, ଦହିକୁ ମନ୍ଥନ କଲେ ଲହୁଣୀ, ଅରଣି କାଠକୁ ଘର୍ଷଣ କଲେ ଅଗ୍ନି ଉତ୍ପନ୍ନ ହୁଏ, ସେହିପରି ସତ୍ୟ ଓ ତପସ୍ୟା ଦ୍ୱାରା ଅନ୍ୱେଷଣ କଲେ ଆତ୍ମାରେ ପରମାତ୍ମାର ଦର୍ଶନ ମିଳି ଥାଏ । ଏଥିରେ ପ୍ରଥମ ଅଧ୍ୟାୟରେ ପରମାତ୍ମାଙ୍କର ସାକ୍ଷାତାକାର ଉପାୟ ଓ ଧ୍ୟାନ, ୨ୟରେ ଯୋଗର ବର୍ଣ୍ଣନା, ୩ୟରୁ ୫ମ ପର୍ଯ୍ୟନ୍ତ ଶୈବ ଦର୍ଶନ ୬ଷ୍ଠରେ ଗୁରୁଭକ୍ତି ବର୍ଣ୍ଣନ କରାଯାଇଛି । ଏଥିରେସୁନ୍ଦର ଭାବରେ ପ୍ରକୃତିର ବର୍ଣ୍ଣନା କରାଯାଇଛି—

ଦ୍ୱାସୁପର୍ଣ୍ଣା ସଯୁଜା ସଖାୟ ସମାନ ବୃକ୍ଷଂ ପାରିଷ ସ୍ୱଜାତେ ।
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନ୍ନନ୍ୟୋ ଅଭିଚାକଶୀତି ॥
ସମାନ ବୃକ୍ଷେ ପୁରୁଷୋ ନିମଗ୍ନୋଽନୀଶୟା ଶୋଚନ୍ତି ମୁହ୍ୟମାନଃ ।
ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶମସ୍ୟ ମହିମାନମିତି ବୀତଶୋକଃ ॥
(ଶ୍ୱେତ. ୪।୬।୭)

"(ପ୍ରକୃତି ଓ ପୁରୁଷ ବିଶେଷ ଅର୍ଥାତ୍ ଜୀବ ଓ ଈଶ୍ୱରରୂପ) ଦୁଇଟି ପକ୍ଷୀ ଯେ କି ଏକତ୍ର ରହନ୍ତି ଓ ମିତ୍ର ଅଟନ୍ତି, ଉଭୟ ଏକ ତ୍ରିଗୁଣାତ୍ମକ ପ୍ରକୃତି ରୂପ ବୃକ୍ଷକୁ ଆଲିଙ୍ଗନ କରି ଅଛନ୍ତି । ସେ ମଧ୍ୟରୁ ଗୋଟିଏ ଜୀବରୂପୀ ପକ୍ଷୀ (ଜନ୍ମ, ଆୟୁ ଏବଂ ଭୋଗରୂପୀ ସୁଖ-ଦୁଃଖ) ସ୍ୱାଦଯୁକ୍ତ ଫଳକୁ ଖାଉ ଅଛି ଏବଂ ଅନ୍ୟଟି ଈଶ୍ୱର ରୂପୀ ପକ୍ଷୀ ଫଳ ନଖାଇ କେବଳ ସାକ୍ଷୀ ରୂପରେ ରହିଅଛି । ସେହି ପ୍ରକୃତି ରୂପୀ ବୃକ୍ଷପ୍ରତି ଜୀବରୂପୀ ପକ୍ଷୀ ଆସକ୍ତ ହୋଇ ଅସମର୍ଥତାରୁ ଠକିଯାଇ ଶୋକ କରୁଅଛି କିନ୍ତୁ ଯେତେବେଳେ କି ଆପଣାର ଅନ୍ୟ ସାଥିଟି ଯୋଗଯୁକ୍ତ ହୋଇ ଈଶ୍ୱର ଓ ତାଙ୍କର ମହିମାକୁ ପ୍ରତ୍ୟକ୍ଷ କରୁଅଛି, ସେତେବେଳେ ଶୋକରୁ ପାର ହୋଇ ଯାଉଛି ।



## ସପ୍ତମ ପରିଚ୍ଛେଦ

### ବେଦବ୍ୟାସର ପ୍ରାକ୍ ଇତିହାସ

ଓଡ଼ିଶା ଦ୍ରାବିଡ଼ ଓ ଆର୍ଯ୍ୟ ସଂସ୍କୃତିର ସମ୍ମିଳନର ଦେବଭୂମି ରୂପେ କେଉଁ ପ୍ରାଚୀନ କାଳରୁ ପ୍ରସିଦ୍ଧି ଲାଭ କରିଛି । ତାର ସ୍ମାରକୀ ହେଉଛି ଶଙ୍ଖ, କୋଇଲ ଓ ବ୍ରାହ୍ମଣୀ ନଦୀର ମିଳନ ସ୍ଥଳ—ଏହି ବେଦବ୍ୟାସ । ଏହି ସ୍ଥାନରେ ପ୍ରାଚୀନ ଆଦିବାସୀ କନ୍ୟା ଓ ଆର୍ଯ୍ୟମୁନି ପରାଶରଙ୍କର ମିଳନରୁ ଜନ୍ମ ନେଇଥିଲେ ନୂତନ ସଂସ୍କୃତିର କର୍ଣ୍ଣଧାର ମହର୍ଷି ବେଦବ୍ୟାସ । ସେ ଏହି ଉତ୍କଳ ମାଟିରେ ଜନ୍ମ ନେଇ ଭାରତୀୟ ସଂସ୍କୃତିକୁ ପ୍ରଭାବିତ କରି ପାରିଛନ୍ତି । ମହାନଦୀ ଓ ସୁବର୍ଣ୍ଣରେଖା ମଧ୍ୟରେ ଅବସ୍ଥିତ ଏହି ଭୂଖଣ୍ଡ ଉତ୍ତର ଦିଗରେ ଆଧୁନିକ ବିହାର, ପଶ୍ଚିମରେ ମଧ୍ୟ ପ୍ରଦେଶର ଯଶପୁର, ପୂର୍ବରେ ପଶ୍ଚିମବଙ୍ଗ ଏବଂ ଦକ୍ଷିଣରେ ସମୁଦ୍ର ।

ଏହି ବେଦବ୍ୟାସ ଭୂଖଣ୍ଡରେ ପ୍ରାଚୀନ କାଳରେ ମହାତ୍ମା ଦାସ ବୋଲି ଏକ ଆଦିବାସୀ କୈବର୍ତ୍ତରାଜ ରାଜତ୍ୱ କରୁଥିଲେ । ତାଙ୍କର କନ୍ୟା ମତ୍ସ୍ୟଗନ୍ଧା ହେଉଛନ୍ତି ବେଦବ୍ୟାସଙ୍କର ଜନନୀ । ଏହି ବିଷୟ ମନେ ପଡ଼ିଲେ ମନରେ ସ୍ୱତଃ ପ୍ରଶ୍ନ ଆସେ, ଏହି ଭୂଖଣ୍ଡ ପ୍ରାଗ୍ ଐତିହାସିକ ଯୁଗରୁ କିପରି ଥିଲା ଏବଂ ଐତିହାସିକ ଯୁଗରେ କିପରି ହେଲା । ଏହି ଅଞ୍ଚଳର ଅଧିବାସୀ କିଏ କିଏ ଥିଲେ, ଏ ବିଷୟରେ ସୀମିତ ଆଲୋଚନା ସମ୍ୟକ ଭାବେ କରିବା ନିମ୍ନ ପରିଚ୍ଛେଦମାନଙ୍କରେ ଅସମୀଚୀନ ହେବ ନାହିଁ ।

### ପ୍ରାକ୍ ଯୁଗରେ ବେଦବ୍ୟାସ—

ଭୌଗଳିକମାନେ ପ୍ରମାଣ କରିଛନ୍ତି ଦକ୍ଷିଣ ଭାରତ, ପଶ୍ଚିମ ଓ ପୂର୍ବ ଘାଟ ପର୍ବତମାଳା ଛୋଟନାଗପୁର ମାଳଭୂମି ଅଞ୍ଚଳ ପ୍ରାଚୀନ ଗଣ୍ଡୱାନାଲ୍ୟାଣ୍ଡର ଏକ ଅଂଶ । ପୃଥିବୀର ସୃଷ୍ଟି ଦିନରୁ ଏହି ଅଞ୍ଚଳର

ଅବସ୍ଥିତ ରହିଅଛି । ପୃଥିବୀର ପ୍ରଥମ ମନୁଷ୍ୟ ଯବଦ୍ୱୀପ, ମଧ୍ୟ ଏସିଆର ଦକ୍ଷିଣ ଭାଗ, ଅଷ୍ଟ୍ରେଲିଆ, ଆଫ୍ରିକା ଏବଂ ଭାରତର ଏହି ଅଞ୍ଚଳମାନଙ୍କରେ ଜନ୍ମ ଗ୍ରହଣ କରିଥିବାର ପଣ୍ଡିତମାନେ ବିଶ୍ୱାସ କରନ୍ତି । ଏହି ଆଦିବାସୀ-ମାନଙ୍କୁ ଅଷ୍ଟ୍ରୋ-ଏସୀୟ (Austro Asiya) ଜାତି ଏବଂ ଅନ୍ୟ କେତେକ କୋଲ୍ କିମ୍ବା ମୁଣ୍ଡାରି ଗୋଷ୍ଠୀ ବୋଲି କହିଥାନ୍ତି । ଏହି ଆଦିବାସୀମାନେ ଛୋଟ ନାଗପୁର ଅଞ୍ଚଳ, ସୁନ୍ଦରଗଡ଼, ମୟୂରଭଞ୍ଜ; କେନ୍ଦୁଝର, ଢେଙ୍କାନାଳ, ବାଲେଶ୍ୱର ଅଞ୍ଚଳରେ ଦେଖାଯାନ୍ତି । ଏମାନଙ୍କ ସହିତ ଆସାମର ଖାସି, ବ୍ରହ୍ମ ଦେଶର ମନ, ନାଙ୍କୋବରପନ୍, ମାଳୟ ଉପଦ୍ୱୀପର ରେମାଙ୍ଗ, ଫିଲି-ପାଇନ୍ସର ଆଏଟା ଓ ଆଣ୍ଡାମାନ ଓ ଜାଭାର କଲିଙ୍ଗ (ଓଡ଼ିଆ-କଳିଙ୍ଗ) ମାନଙ୍କ ସହିତ ଘନିଷ୍ଠ ସଂପର୍କ ରହିଛି ।

ବେଦବ୍ୟାସ ନିକଟସ୍ଥ ସୁନ୍ଦରଗଡ଼ ଜିଲ୍ଲାରୁ ଆଦିମାନବର ବାସ ଭୂମି ଥିବାର କେତେକ ପ୍ରମାଣ ପ୍ରତ୍ନତତ୍ତ୍ୱବିତ୍‌ମାନେ ପାଇଲେଣି । ଆଦ୍ୟ ପ୍ରସ୍ତର ଯୁଗର ମନୁଷ୍ୟ ଦ୍ୱାରା ବ୍ୟବହୃତ ଅସ୍ତ୍ର ଶସ୍ତ୍ର ଯଥା ହାଣ୍ଡିଆ (Hand axes) Cleavers, Scrapers) ପ୍ରଭୃତି ବଣାଇ ଗିରି, ଜଙ୍ଗଲ, ସାତ କୋଷ ନିକଟରୁ ମିଳିଛି । ପ୍ରାଚ୍ୟତୋସ୍ମା ବ୍ରାହ୍ମଣୀ ଉପତ୍ୟକାରେ ଏକଦା ଆଦ୍ୟ ପ୍ରସ୍ତର ଯୁଗର ସଭ୍ୟତା ଗଢ଼ି ଉଠିଥିଲା—ଏହା ତାର ପ୍ରମାଣ । ସେହି ନଦୀର ଆହୁରି ତଳକୁ ଢେଙ୍କାନାଳ, କାଙ୍କଡ଼ା କଟା, ହରିଚନ୍ଦନପୁର ଓ କୁଲିହବଗା ଠାରୁ ମଧ୍ୟ ଏହିପରି ପ୍ରସ୍ତର ନିର୍ମିତ ଅସ୍ତ୍ର ଶସ୍ତ୍ର ମିଳିଛି । (୧)* 'କୁଲିହବଗା'ରୁ ମିଳିଥିବା ପ୍ରତ୍ନ-ପ୍ରସ୍ତରାସ୍ତ୍ର କଲିକତା ଯାଦୁଘରେ ସଂରକ୍ଷିତ ଅଛି । (୨)*

ଖ୍ରୀଷ୍ଟପୂର୍ବ ଏକ ଲକ୍ଷ ପଚାଶ ହଜାର ବର୍ଷରୁ ଖ୍ରୀଷ୍ଟପୂର୍ବ ପଚାଶ ହଜାର ବର୍ଷର ମଧ୍ୟବର୍ତ୍ତୀ ଯୁଗକୁ ପ୍ରସ୍ତର ଯୁଗ ବୋଲି କୁହାଯାଏ । ଆଦ୍ୟ ପ୍ରସ୍ତର ଯୁଗରେ ପ୍ରଥମେ ପଥର ଦେହରେ ପଥରକୁ ଘଷି ଆଦିମାନବ ତାର ପଥର ଅସ୍ତ୍ର ନିର୍ମାଣ

(୧)* ବ୍ରାହ୍ମଣୀ-ସଭ୍ୟତାର ଏକ ଅଧ୍ୟାୟ—
ପ୍ରାଚୀନ ଉତ୍କଳର ଧର୍ମ ଓ ପ୍ରତ୍ନତତ୍ତ୍ୱ—ପ୍ରଶାନ୍ତ କୁମାର ରାୟ

(୨)* ଓଡ଼ିଶାର ପ୍ରତ୍ନତତ୍ତ୍ୱ—
ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ—ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ
ଓଡ଼ିଶା ସାହିତ୍ୟ ଏକାଡେମୀ

କରିଥିଲା । ଆଦି ମାନବ ପ୍ରଥମେ ପ୍ରଚୁର ଖାଦ୍ୟ ପାଉଥିଲା ତାର ପାରି-ପାର୍ଶ୍ୱିକ ଅଞ୍ଚଳରୁ, ତେଣୁ ତାର ଅସ୍ତ୍ର ଶସ୍ତ୍ର ବିଶେଷ ଦରକାର ପଡୁ ନଥିଲା । ମଧ୍ୟ ପ୍ରସ୍ତର ଯୁଗରେ ପରିସ୍ଥିତି ବଦଳି ଗଲା, ଶିକାର ସହଜରେ ମିଳିଲାନି, ଖାଦ୍ୟ ମଧ୍ୟ ନଅଣ୍ଟ ହେଲା । ମନୁଷ୍ୟ ତାର ଜୀବନ ଧାରଣ ପାଇଁ ସଂଗ୍ରାମ କରି ଚାଲିଲା । ତାର ଦରକାର ହେଲା ମଜ୍ଜି, ପଥରର ଉନ୍ନତ ଧାରୁଆ ଅସ୍ତ୍ର । ତେଣୁ ସେ ଜେସପାର, ଓପାଲ, ଚେରଟ (Chert) ଏବଂ କ୍ୱାଟଜରୁ ଅସ୍ତ୍ର ତିଆରି କରି ଶିକାର କଲା । ମଧ୍ୟ ଯୁଗର ଫ୍ଲେକ (Flakes) ଅସ୍ତ୍ର ବିଶାଳବୁରି, ଭଞ୍ଜଗଡ଼, ଖଲୁଉଣ୍ଡୁରୀ, ବଣାଇଗଡ଼, ବଗ୍ରି, ଜଗନ୍ନାଥ ଘୋଷ, ଝିରପାଣି, ଖଡ଼ିଆକୁଦର, ଝୁଣ୍ଟି ଗାଁ, ଭୁମ କେଲାଘାଟ ଏବଂ କୁଚିଡ଼ି ଅଞ୍ଚଳରୁ ମିଳିଛି । ମଧ୍ୟ ପ୍ରସ୍ତର ଯୁଗରେ ମଣିଷ ପଥରରୁ ଛେଲି କାଢ଼ି ଅସ୍ତ୍ର ନିର୍ମାଣ କୌଶଳ ହାସଲ କରିଥିଲା ।

ଶେଷ ପ୍ରସ୍ତର ଯୁଗ ବା ନିଓଲିଥିକ ଯୁଗରେ ଚିକ୍କଣ ପଥର ବ୍ୟବହାର ଶିଖିଲା ପରେ କାଣ୍ଡ ଅଗରେ ଖଞ୍ଜିଲା ପରି କ୍ଷୁଦ୍ର ଆକୃତି ବିଶିଷ୍ଟ ଅସ୍ତ୍ର ନିର୍ମାଣ କଲା । (Late stone age or Neolithic Age ) ଏହିପରି ନଅଟି ଲାଲ ରଙ୍ଗର ଜେସ୍‌ପାର (Jasper) ପଥରରେ ତିଆରି ଅସ୍ତ୍ର ବଣେଇ ନିକଟବର୍ତ୍ତୀ ଖଲୁଉଣ୍ଡୁରୀରୁ ମିଳିଛି । କୁଟେଗାଁର କରିପାଣି ଏବଂ ଜଙ୍ଘରାର ବ୍ରାହ୍ମଣୀ ନଦୀ ଶଯ୍ୟାରୁ ମିଳିଛି ।

ଐତିହାସିକ ଏ. ସି. ମିତ୍ତଲ ତାଙ୍କର "ଆନ ଅର୍ଲିହିଷ୍ଟ୍ରି ଅଫ ଓଡ଼ିଶା" ପୁସ୍ତକରେ ଏହି ଅଞ୍ଚଳର ପ୍ରସ୍ତର ଗୁମ୍ଫା ସମୂହ ଆଦିମଣିଷ ମାନଙ୍କର ବାସସ୍ଥଳ ଥିଲା ବୋଲି ସୁଚିନ୍ତିତ ମନ୍ତବ୍ୟ ଦେଇଛନ୍ତି । ଏହିପରି ଗୁମ୍ଫା ସମୂହର ଉପରେ ପଥରର ସବୁ ପୋଟିକୋଠରି ଝୁଲି ରହିବା ସ୍ଥାନ ମାଣିକ ମୁଣ୍ଡା, ଉଷାକୋଠି ଏବଂ ବେଲସରା ନିକଟସ୍ଥ ଆଖଡ଼ା ପର୍ବତରେ ଦେଖିବାକୁ ମିଳେ ।

ଆଦିମ ମଣିଷ କାଠର କାଣ୍ଡ ଅଗରେ କ୍ଷୁଦ୍ର ସୂକ୍ଷ୍ମ ଅସ୍ତ୍ର ଜେସପାର, ସ୍ଫଟିକମଣି ଚକମକ ପଥରରେ ତିଆରି କରିବାକୁ ଶିଖିଲା । ଏହା ପ୍ରାୟ ଖ୍ରୀଷ୍ଟପୂର୍ବ ୨୫ ହଜାର ବର୍ଷରୁ ଖ୍ରୀଷ୍ଟପୂର୍ବ ଦଶ ହଜାର ବର୍ଷ ଭିତରେ ବିକାଶ ଲାଭ କରିଥିବା ଅନୁମାନ କରାଯାଏ । ମଣିଷ ଧୀରେ ଧୀରେ ଶିକାରୀ ଜୀବନରୁ

ଖାଦ୍ୟ ସଂଗ୍ରହ କରିବା ଶିଖିଲା । ଗୃହନିର୍ମାଣ, ପଶୁ ପାଳନ, ଖାଦ୍ୟ ସଂଗ୍ରହ କରିବା ପାଇଁ ଉନ୍ନତ ଉପାୟ ଉଦ୍ଭାବନ କଲା । ଏହା ନୂତନ ପ୍ରସ୍ତର ଯୁଗର ସନ୍ଧାନ ଦେଲା । ଶବର, କନ୍ଧ ସନ୍ତାନ ମାନେ ମୃତ ବ୍ୟକ୍ତି ମାନଙ୍କର ସମ୍ମାନ ନିମିତ୍ତ ବୃହତ୍ ପଥର କୀର୍ତ୍ତିମାନ ନିର୍ମାଣ କଲେ । ଏମାନଙ୍କର ପିତୃପୂଜା ପ୍ରସ୍ତର ଯୁଗର ସଂସ୍କୃତିରୁ ଆସିଛି । ଏହି ନୂତନ ପ୍ରସ୍ତର ଯୁଗର ସମୟ ଖ୍ରୀଷ୍ଟପୂର୍ବ ୧୦ ହଜାର ବର୍ଷରୁ ଖ୍ରୀଷ୍ଟପୂର୍ବ ୩ ହଜାର ବର୍ଷ ପୂର୍ବର ବୋଲି ପଣ୍ଡିତ ମାନଙ୍କର ମତ ।

ଆଦିମାନବ ପ୍ରଥମେ ନିଜ ନିଜ ମଧ୍ୟରେ ଭାବ ପ୍ରକାଶ କରିବା ପାଇଁ ଛବି ଆଙ୍କିବା ଶିଖିଲା । ଗଛର ଛେଲି ଓ ପତ୍ର ଏବଂ ବିଭିନ୍ନ ଧାତୁ ମିଶ୍ରିତ ମାଟି ସାହାଯ୍ୟରେ ପଥରରେ ରଙ୍ଗଦେଲା । ଏହିପରି ଅନେକ ଚିତ୍ରପଟ୍ଟ ବେଦବ୍ୟାସ ନିକଟସ୍ଥ ବ୍ରାହ୍ମଣୀ ଓ ମହାନଦୀ ମଧ୍ୟ ଭୂଖଣ୍ଡରେ ଅର୍ଥାତ୍ ସୁନ୍ଦରଗଡ଼ର ମାଣିକମୁଣ୍ଡା, ଉଷାକୋଠି ଏବଂ ସମ୍ବଲପୁର ଜିଲ୍ଲାର ବିକ୍ରମଖୋଲ ଏବଂ ଉଲପଗଡ଼ରେ ଦେଖିବାକୁ ମିଳେ । ଭାରତର ଅନ୍ୟ ପ୍ରଦେଶ ଯଥା ମଧ୍ୟପ୍ରଦେଶର ସିଙ୍ଘନପୁର ଏବଂ ମହାରାଷ୍ଟ୍ରର ମୋରହନା ପାହାଡ଼ରେ ଦେଖିବାକୁ ମିଳେ । ସୁନ୍ଦରଗଡ଼ର ଚିତ୍ର ସହିତ ରାୟଗଡ଼ ଓ ଚକ୍ରଧରପୁରର ଚିତ୍ରରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ✻

## ପ୍ରାକ୍ ଐତିହାସିକ ଚିତ୍ରପଟ୍ଟ--

**ମାଣିକ ମୁଣ୍ଡା**— ବେଦବ୍ୟାସରୁ ହେମଗିରି ସୁନ୍ଦରଗଡ଼ ମଧ୍ୟ ଦେଇ ଯିବାକୁ ପଡ଼ିବ । ପ୍ରଥମେ ଦଶ ନମ୍ବର ରାଜ୍ୟ ରାଜପଥରେ ୯୫ କିଲୋମିଟର ଗଲାପରେ ହେମଗିରି ରାସ୍ତାରେ ୩୬ କିଲୋମିଟର ପିଚୁ ସଡ଼କରେ ଯିବାକୁ ପଡ଼େ । ସେ ସ୍ଥାନରୁ ମାଣିକମୁଣ୍ଡା ସ୍ଥାନଟି ୫କିଲୋମିଟର ଦକ୍ଷିଣ— ପଶ୍ଚିମ ଦିଗରେ ଘନ ଜଙ୍ଗଲ ମଧ୍ୟରେ ଅବସ୍ଥିତ ।

✻ ଓଡ଼ିଶାର ପ୍ରତ୍ନତତ୍ତ୍ୱ—- ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ
ଓ ଅନ୍ୟାନ୍ୟ ପ୍ରବନ୍ଧ

ପ୍ରଥମେ ହେମଗିରି— କନକାବେଡ଼ାରେ କଚ୍ଚା ବାଟ ଗଲାପରେ ଡାହାଣ ଦିଗକୁ ଗ୍ରାମ୍ୟ ରାସ୍ତାରେ ଯାଇଁ ଶୁଖାବିଲ ଗ୍ରାମର ମହାଦେବ ମନ୍ଦିର ନିକଟରୁ ଡାହାଣକୁ ଜଙ୍ଗଲ ରାସ୍ତା ମଧ୍ୟ ଦେଇ ଯାଇ ପୁଣି ବାମ ଦିଗକୁ ଗଲେ ସେ ସ୍ଥାନରେ ପହଞ୍ଚି ହେବ । ସେଠାରେ ପାହାଡ଼ର ଧାରରେ ୧୦୦ମିଟର ଦୈର୍ଘ୍ୟ, ୧୬ମିଟର ପ୍ରସ୍ଥ ବିଶିଷ୍ଟ ଏକ ଗୁମ୍ଫା ଦେଖିବାକୁ ମିଳେ । ବର୍ଷା ଓ ବାତ୍ୟାରୁ ରକ୍ଷା ପାଇବା ପାଇଁ ଏକାଦିକ୍ରମେ ସେଠାରେ ଚାରି ହଜାରରୁ ପାଞ୍ଚ ହଜାର ପର୍ଯ୍ୟନ୍ତ ଲୋକ ଆଶ୍ରୟ ନେଇ ପାରିବେ । ଏହି ଗୁମ୍ଫା ମାନଙ୍କରେ ଭିତର କାନ୍ଥ ଉପରେ ଲାଲ ଓ ଧଳା ରଙ୍ଗର ଶିକାର ଚିତ୍ର ଏବଂ ଯୁଦ୍ଧ ଚିତ୍ର ଦେଖିବାକୁ ମିଳେ । ଏହି ଚିତ୍ର ଗୁଡ଼ିକ ଆଦିମାନବ ମାନେ କେଉଁ ପ୍ରାକ୍ ଐତିହାସିକ ଯୁଗରୁ ନିଜର ଭାବ ପ୍ରକାଶ କରିବା ପାଇଁ ଆଙ୍କିଛନ୍ତି ।

## ଉଷାକୋଠି—

ବେଦବ୍ୟାସରୁ ସୁନ୍ଦରଗଡ଼ ମଧ୍ୟଦେଇ ଲେଫ୍ରିପଡ଼ା ବାଟେ ଉଷାକୋଠି ଯିବାକୁ ପଡ଼େ । ପ୍ରଥମେ ବେଦବ୍ୟାସର ରାଉରକେଲା ସୁନ୍ଦରଗଡ଼ ରାସ୍ତାରେ ୯୫ କିଲୋମିଟର ଗଲାପରେ ଲେଫ୍ରି ପଡ଼ାରାସ୍ତାରେ ଯିବାକୁପଡ଼େ । ଲେଫ୍ରିପଡ଼ାରୁ ଭୈରବମାଳ ଗ୍ରାମ ଦେଇ ଡଙ୍ଗର ବଗା ପର୍ଯ୍ୟନ୍ତ ବସ୍ ସର୍ଭିସ୍ ଅଛି । ଏଠାରୁ ରାଜ ବାହାଲ ଗ୍ରାମଦେଇ ତେଲେନପାଲି ପର୍ଯ୍ୟନ୍ତ ୬ କିଲୋମିଟର ଜିପ୍ ଗାଡ଼ିରେ ଯାଇହେବ । ତାପରେ ଚାଲାପଥରେ ୩ କିଲୋମିଟର ଜଙ୍ଗଲ ରାସ୍ତାରେ ଗଲାପରେ ଆମତପାଣି ଗ୍ରାମ ପଡ଼େ ସେଠାରେ ଏକ ସୁନ୍ଦର ଝରଣା ଗୋଟିଏ ପଥର ଉପରୁ ବାହାରୁଛି । ପ୍ରାୟ ୨ଟି ଷ୍ଟେପ୍‌ରେ ପାଣି ବାହାରୁଛି । ଏହି ଝରଣା କୂଳରେ ସାଧାରଣତଃ ଦର୍ଶକ ମାନେ ଭୋଜି କରିଥାନ୍ତି ଏହି ସ୍ଥାନରୁ ପାହାଡ଼ିଆ ରାସ୍ତାରେ ଦେଢ଼କିଲୋ ମିଟର ଲକ୍ଷ୍ମଣ ପାଦ ରାସ୍ତାରେ ଯାଇଁ ଡାହାଣକୁ ଗଲେ ତିନୋଟି ପାହାଡ଼ ଶୃଙ୍ଗ ଦେଖାଯାଏ । ମଝି ପାହାଡ଼ ଏକ ପଥର ଚଟାଣର ମୁଣ୍ଡିଆ ପାହାଡ଼ । ଏହାକୁ ନନ୍ଦୀ ପାହାଡ଼ କୁହନ୍ତି । ଏହି ପାହାଡ଼କୁ ଖାଲିପାଦରେ ଚଢ଼ିବାକୁ ହେବ । ସେଠାରେ ଗୋଟିଏ ଗୁମ୍ଫା ୫ମିଟର × ୩ମିଟର ବିଶିଷ୍ଟ, ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ହେବ, ଭିତର କାନ୍ଥ ନିକଟରେ ସେହି ପଥର ଶିବଲିଙ୍ଗ ଓ ଭବର ଚିହ୍ନ ରହିଛି । ଏଠାରେ ଗୋଲ ନ ହୋଇ କୋନ ସଦୃଶ୍ୟ ରହିଛି । ଏଠାରେ ରାମଚନ୍ଦ୍ରଙ୍କ ବନବାସ ସମୟରେ ଶିବଙ୍କୁ ପୂଜା କରିଥିବାର ଜଣାଯାଏ ।

ବର୍ତ୍ତମାନ ଶିବରାତ୍ରି ଦିନ ମଧ୍ୟ ପ୍ରଦେଶ ଓ ଓଡ଼ିଶାର ଶହ ଶହ ଆଦିବାସୀ ଲୋକମାନେ ଶିବ ପୂଜା କରିଥାନ୍ତି । ସମ୍ଭବତଃ ଶୈବ ଧର୍ମର ପ୍ରାକ୍ କାଳରେ ଏଠାରେ ଆଦିବାସୀମାନେ ଶିବପୂଜା କରି ଆସୁଥିବାର ଜଣାଯାଏ । ରାମ ଲକ୍ଷ୍ମଣ ଏହି ସ୍ଥାନରେ ରହି ଥିବାରୁ ସ୍ମାରକୀ ସ୍ୱରୂପ ଲକ୍ଷ୍ମଣ ପାଦ ଗ୍ରାମରେ ଗୋଟିଏ ପାଦଚିହ୍ନ ( ପଥର ଖୋଳ ) କୁ ପୂଜା କରୁଛନ୍ତି । ଏହି ସ୍ଥାନରୁ ୧ କିଲୋମିଟର ଦୂରରେ ଲକ୍ଷ୍ମଣପାଦ ଗ୍ରାମଟି ଅବସ୍ଥିତ । ଏଠାରୁ ଓଡ଼ିଶା ଓ ମଧ୍ୟ ପ୍ରଦେଶର ଆଧୁନିକ ସୀମା ଅତି ନିକଟରେ ରହିଛି । ତିନି ପାହାଡ଼ ଶୃଙ୍ଗରୁ ପୂର୍ବ ପଟରେ ଇଚ୍ଛା ନାଳର ଉପନଦୀର କୂଳରେ ଅବସ୍ଥିତ ଶୃଙ୍ଗକୁ ଉଷାକୋଠୀ କୁହାଯାଏ । ଏହି କୋଠୀର ଗୁମ୍ଫାର ଛାତ ପଟ କାନ୍ଥରେ ଲଗାର ଧଡ଼ି ପରି ଛକ ଓ କୋଠୀ ପରି ଚିତ୍ରପଟ, ଅର୍ଦ୍ଧବୃତ୍ତ ପରି ଅକ୍ଷର ଆଳଙ୍କରଣ, ଗୁଞ୍ଜୁଣୀ ମୁଠା (ବାଡ଼ୁଣୀ) ଚିତା ପରି ଲାଲ ଲୁହାଟିଆ ରଙ୍ଗର ଚିତ୍ରପଟ୍ଟ ଦିଶୁଛି । ଏଠାରୁ ପ୍ରଥମେ ଉପର ଏବଂ ତଳକୁ କଟୁ ବାଟ ଓହ୍ଲାଇ ପୁଣି ପୂର୍ବ ପଟ ଶୃଙ୍ଗର ଆଡ଼କୁ ଚଢ଼ିବାକୁ ପଡ଼େ ଏବଂ ଦୁଇଟି ବଡ଼ ପଥର ମଧ୍ୟରେ ୪୫ ସେଣ୍ଟିମିଟର ସ୍ଥାନରେ ନିଜ ଶରୀରକୁ ଅତିକ୍ରମ କଲାପରେ ଅଜନ୍ତା ଗୁମ୍ଫାପରି ପଥର କଟା ହୋଇ ସେଥିରେ ଚିତ୍ରପଟ୍ଟ ଅଙ୍କିତ ହୋଇଥିବା ଜଣା ପଡ଼େ । ସେ ସ୍ଥାନଟି ଠିଆ ହୋଇଥିବା ପଥରରୁ ପ୍ରାୟ ୩ ମିଟର ଉଚ୍ଚରେ ଅବସ୍ଥିତ । ସେଠାକୁ ସିଡ଼ି ସାହାଯ୍ୟରେ ଯିବାକୁ ପଡ଼େ କିମ୍ବା ସେହି ତଳ ପଥରରୁ ଚିତ୍ରପଟ୍ଟଗୁଡ଼ିକ ଦେଖିବାକୁ ମିଳେ । ସେଠାରେ ଉପରୁ ତଳକୁ ଏବଂ ଲମ୍ବ ଭାବେ ଅନେକ ଗୁଡ଼ିଏ ଲାଲ ରଙ୍ଗର ଗାର ଲେଖା ହୋଇଥିବାର ଦେଖାଯାଏ, ବାମ ପଟକୁ ଛକ କୋଠି ପରି ଗାରଗୁଡିକ ଲାଇନରେ ପଡ଼ିଛି । ତାର ନିକଟରେ ଗୋଟିଏ ପଶୁର ଚିତ୍ର ଦିଶୁଛି, ଯାହାର ମୁଖର ଉପର ରେଖା ସିଙ୍ଗ, କାନ, ପଛ ପଟ ଲାଞ୍ଜ ଲିଭିଗଲାଣି । ଗୁରୁଟି ଗୋଡ଼ ପରିଷ୍କାର ଦିଶୁଛି । ଏହିପରି ଚିତ୍ର ଆଦିମାନବ ତାର ଭାବ ପ୍ରକାଶର ଭଙ୍ଗୀ ରୂପେ ପ୍ରଥମେ ଲେଖି ଶିଖିଥିଲା ।

## ପ୍ରାଚୀନ କଳାର ଉତ୍ପତ୍ତି—

ପ୍ରାଗୈତିହାସିକ କାଳରୁ କଳାର ପ୍ରମାଣ ଏହି ଉଷା କୋଠୀ ଓ ମାଣିକ ମୁଣ୍ଡାରୁ ମିଳୁଛି । ଆଦିମାନବ ଖାଦ୍ୟାନ୍ୱେଷଣ ଲାଗି ଯେତେବେଳେ ଯାଯାବର ଜୀବନ ଯାପନ କରୁଥିଲା, ସେହି ସମୟରୁ ସେ କଳାକୁ ତାର

ଜୀବନର ଏକ ପାଥେୟ କରି ନେଇଥିଲା । ଉଷା କୋଠୀର ପୂର୍ବପଟ କାନ୍ଥରେ ଯେଉଁ ପଶୁର ଶବ ଅଛି, ତାକୁ ପୂଜା କରି ତା ଉପରକୁ ଡକ୍ଟୁ ଛିଡ଼ା ହୋଇ ଶର ପ୍ରୟୋଗ କରୁଥିଲା । ପଶୁର ମସ୍ତକରେ ଶର ଲାଗିଲେ ତାର ଶିକାର ସୁରୁଖୁରୁରେ ମିଳିପାରିବ ବୋଲି ଭାବୁଥିଲା । ସେଠାରେ ଗଛର କାଣ୍ଡ ପରି ଏକ ମୂନିଆ ଦୁଇ ମୂନିଆ ଅସ୍ତ୍ର ଥିଲାପରି ଶବ ଅଛି । ପ୍ରାଚୀନ ପ୍ରସ୍ତର ଯୁଗରେ ହିଂସ୍ର ପଶୁମାନଙ୍କ କବଳରୁ ନିଜକୁ ରକ୍ଷା କରିବା ପାଇଁ ପ୍ରସ୍ତର ନିର୍ମିତ ଅସ୍ତ୍ର ଏବଂ ପଥର ଖଣ୍ଡର ବ୍ୟବହାର ହେଉଥିବାର ଜଣାଯାଏ । କେତେକ ଆଲୋଚକଙ୍କ ମତରେ ଋକ୍ ବେଦର ଦୁଃଖ ଅପନୋଦନକାରୀ ରୂପେ ରୁଦ୍ରଙ୍କର ଯେଉଁ ବର୍ଣ୍ଣନା ମିଳେ ସେଥିରେ ତାଙ୍କର ଅସ୍ତ୍ର ରୂପେ 'ଟଙ୍କ' ବା ଚଉଟ ପ୍ରସ୍ତର ଖଣ୍ଡର ଉଲ୍ଲେଖ ଦେଖିବାକୁ ମିଳିଥାଏ । ସମ୍ଭବତଃ ଆର୍ଯ୍ୟମାନେ ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରକୁ ରୁଦ୍ରଙ୍କ ହସ୍ତରେ ଦେଖି ପାରିଛନ୍ତି । ମାଣିକ ମୁଣ୍ଡାରେ ଯେଉଁ ପଶୁ ଶିକାର ଶବ, ଦେଖିବାକୁ ମିଳେ ସେଠାରେ ଜଣେ ଶିକାରୀ ବାମ ହସ୍ତରେ ଗଛର ଡାଳ ଦକ୍ଷିଣ ହସ୍ତରେ ପଥର ଖଣ୍ଡ ଧରିଥିଲା ପରି ଦେଖାଯାଏ ।

ଆଦି ମଣିଷ ନିଜେ ନିଜେ ଶିକାର କରି ଖାଦ୍ୟ ଅନ୍ୱେଷଣରେ ଲାଗିଲା, ଯାଯାବର ଜୀବନ ଯାପନ କରି କ୍ରମେ ବୃହତ୍ତର ଦଳଗତ ଜୀବନଯାପନ ଆରମ୍ଭ କଲା । ଶିକାର କରିବା ପାଇଁ ଦଳଗତ ଭାବେ ଖେଦ ବା ଭଉ * କରି ପଶୁମାନଙ୍କୁ ଷନିଦଗରୁ ଦଉଡ଼ାଇ ଚତୁର୍ଥ ଦ୍ୱାରରେ ଲାଠି ଓ ପଥର ସାହାଯ୍ୟରେ ଆକ୍ରମଣ କରୁଥିଲା । ଅଗ୍ନିର ବ୍ୟବହାର ଏହି ସମୟରେ ଶିଖିଲେ । ଜଙ୍ଗଲରେ ଅଗ୍ନି ଲାଗିଗଲେ ପଶୁମାନେ ଭୟରେ ପଳାୟନ କରୁଥିଲେ । ଆଦିମାନବ ଗୋଷ୍ଠିଗତ ଖେଦାରେ ତାର ପ୍ରୟୋଗ କଲେ । ଏହିପରି ଶିକାର କରିବା ଦୃଶ୍ୟ ମାଣିକ ମୁଣ୍ଡାର ଏକ ଶବରେ ପ୍ରକାଶ ପାଇଛି । ଦକ୍ଷିଣ ହସ୍ତରେ ପଥରର ଅସ୍ତ୍ର ଏବଂ ବାମ ହସ୍ତରେ ନିଆଁ ହୁଳା ଥାଇ ଖେଦାରେ ରୁଦ୍ରଙ୍କୁ ଅଗ୍ନି ରୂପରେ ବ୍ୟକ୍ତ କରିଛନ୍ତି । ରୁଦ୍ର ହେଉଛନ୍ତି ଅଗ୍ନି-ଉତ୍ପନ୍ନକାରୀ, ଏହା ତାଙ୍କର କପାଳ ମଧ୍ୟସ୍ଥ ତୃତୀୟ ନୟନ ଦ୍ୱାରା ସମ୍ଭବ ହୋଇଛି ।

---

* ଭଉ— ଖେଦାକରି ପଶୁମାନଙ୍କୁ ତିନି ଦିଗରୁ ଦଉଡ଼ାଇ ଏହା ସୁନ୍ଦର ବ୍ୟବହୃତ ଶବ୍ଦ ।

ଉଷାକୋଠିରେ ଯେଉଁ ଶିବଲିଙ୍ଗ ପୂଜାପାଉଛନ୍ତି ସେହି ଲିଙ୍ଗକୁ ରାମଚନ୍ଦ୍ର ତ୍ରେତୟା ଯୁଗରେ ପୂଜାକରୁଥିଲେ ବୋଲି କୁହାଯାଉଛି । ଉଷା-କୋଠୀର ଶିବ ସେଠାରେ ଶବରଙ୍କ ଆର୍ଦ୍ଧିବା ସମୟରୁହିଁ ପୂଜାହୋଇ ଆସୁଛନ୍ତି । ଶିକାର ଜୀବନ ଧାରଣ ସମୟରେ ଶ୍ରେଷ୍ଠ ଶିକାରୀ ପିନାକପାଣି ଶିବ ମନୁଷ୍ୟ ଗୋଷ୍ଠୀର ନେତା ରୂପେ ପୂଜାପାଉଥିଲେ । ଦୂରରୁ ଶିକାର କରିବା ପାଇଁ ରୁଦ୍ରରୂପୀ ମନୁଷ୍ୟ ଶର ଓ ଧନୁର ଉଦ୍ଭାବନ କଲ । କ୍ରମେ କ୍ରମେ ମନୁଷ୍ୟ ହିଂସ୍ରଜନ୍ତୁ ମାନଙ୍କ ଠାରୁ ନିର୍ଭୟ ରହିଲେ, ଏହା ଫଳରେ ଶିବ (ରୁଦ୍ର) ପଶୁପତି ନାମରେ ନାମିତ ହେଲେ । ଉଷା କୋଠରେ ଶିବ ଲିଙ୍ଗ ପୂଜା ହେବା ପରେ ପରେ ହରପ୍ପା ଓ ମହେଞ୍ଜୋଦାରେ ଶିବ ପୂଜା ହେଉଥିବାର ପ୍ରମାଣ ସେ ଅଞ୍ଚଳରେ ଭୂଖୋଦନରୁ ପ୍ରାପ୍ତ ଶିବ ମୂର୍ତ୍ତିରୁ ଜଣା ପଡ଼େ । ସେଠାରେ ଗୋଟିଏ ଚତୁଃକୋଣ ଶିଲମୋହରରେ ଖୋଦି ତ୍ରିମୁଖ, ତ୍ରିଶୃଙ୍ଗ, ଦ୍ୱିଭୂଜ ଓ ଯୋଗାସନରେ ଉପବିଷ୍ଟ ଏକ ମୂର୍ତ୍ତି ଖୋଦିତ ହେବାର ଦେଖିବାକୁ ମିଳେ । ସାର୍ ଜନ୍ ମାର୍ଶେଲ ଏହାକୁ ଅନାର୍ଯ୍ୟ ଶିବଙ୍କର ସ୍ୱରୂପ ବୋଲି କହନ୍ତି । ଏ. ଡ଼ି. ପୁସଲକର କହିଛନ୍ତି—

"Among the male Gods the most remarkable is a three faced daity wearing a horned-head dress, seated crossed legged on a throne withe penis errected and surrounded by elephant, tiger, buffalo and rhinoceros with dear appearing under the seat.★

ଉକ୍ତ ଶିଲ ମୋହରରୁ ଜଣାଯାଏ ଶିବ ଏକ ଧାରରେ ଲିଙ୍ଗ ଓ ପଶୁପତିମାନଙ୍କ ଦ୍ୱାରା ଆବୃତ ଦେବତା ଅର୍ଥାତ୍ ପଶୁପତି ରୂପେ ପୂଜା ପାଉଥିଲେ । ଆର୍ଯ୍ୟ ସଭ୍ୟତାର ଆଗମନ ପୂର୍ବରୁ, ଭାରତୀୟ ଉପମହାଦେଶରେ ଶିବ, ଜନକ ବା ସୃଷ୍ଟିର ପ୍ରତୀକ ଭାବରେ ଲିଙ୍ଗ ରୂପେ ଓ ଜୀବରାଜ ବା ପଶୁପତି ଭାବରେ ପ୍ରତିଷ୍ଠିତ ହୋଇ ସାରିଥିଲେ ।

ଉପରୋକ୍ତ ଶିଲ ମୋହରରେ ଯେଉଁ ତ୍ରିମୁଖ, ତ୍ରିଶୃଙ୍ଗ ମୂର୍ତ୍ତି ଅଙ୍କିତ ହୋଇଛି, ସେହିପରି ଶୃଙ୍ଗ ଥିବା ମନୁଷ୍ୟର ଚିତ୍ର ମାଣିକ ମୁଣ୍ଡା ଗୁମ୍ଫାରେ ଦେଖିବାକୁ ମିଳେ । ସେଠାରେ ଦୁଇଟି ଶୃଙ୍ଗଥିବା ଜଣେ ଲୋକ ବାମ ହସ୍ତରେ ଅନ୍ୟ ଜଣଙ୍କର ଦକ୍ଷିଣ ହସ୍ତଟି ଧରି ଉପରକୁ ଟେକି ଧରିଛନ୍ତି ।

★ The Vedic Age_Vol- I

ସମ୍ମୁଖରେ ଗୋଟିଏ ପଶୁର ଶବ ଦେଖାଯାଏ । ସମ୍ଭବତଃ ସେହି ଶବରେ ଶୃଙ୍ଗଧାରୀ ମନୁଷ୍ୟ ପଶୁପତି ହୋଇପାରନ୍ତି । ହାତ ଧରିଥିବାଲୋକ ରୁଦ୍ରଗଣ ହୋଇପାରନ୍ତି । ରୁଦ୍ରଗଣଙ୍କ ସମ୍ପର୍କରେ ଶତପଥ ବ୍ରାହ୍ମଣ (ଶତରୁଦ୍ରୀୟସ୍ତବ) ରେ ଅନେକ ସୂଚନା ଦିଆହୋଇଛି । ରୁଦ୍ରମାନେ ଭୀଷଣ ପ୍ରକୃତିର ମାନବ ଉପ୍ତୃଙ୍ଖଳକାରୀ, ଅସ୍ତ୍ର ଶସ୍ତ୍ରର ଅଧିକାରୀ, ଅସ୍ତ୍ର ଚାଳନା ପଟୁତା ଯୋଗୁ ଶତ୍ରୁ ବା ଶିକାରକୁ ସହଜ ଦୂରରୁ ଘେରି କବଳିତ କରି ପାରିବା ପ୍ରଭୃତିର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ପାଶ୍ଚାତ୍ୟ ଗବେଷକ ଓ ଲେଖକ P. M. Oursel, H. W. Grabowska and P. Stern ତାଙ୍କର Ancient India and Indian Civilization ନାମକ ପୁସ୍ତକରେ ରୁଦ୍ରଙ୍କ ସମ୍ପର୍କରେ ଲେଖିଛନ୍ତି । "Rudra, the Roarer, Personifies all that cattle-Owners fear-Storm and Phague. His sons are the marcets, the harricanes which descend from the mountains where he dwells. ହିମାଳୟର ପଦାଙ୍କନ ଦେବତା ଓ ଆଦିମାନବଙ୍କର ଶ୍ମଶାନ ବା ମୃତ୍ୟୁର ଦେବତା 'ରୁଦ୍ର' ଆର୍ଯ୍ୟ ମାନଙ୍କ ଆଗମନ ବେଳକୁ କଲ୍ୟାଣମୟ ଶିବ' ରେ ପରିଣତ ହୋଇଥିଲେ ।

ପ୍ରାଚୀନ କାଳରେ ଶିକାରୀ ଜାତିର ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବାଦ-ବିବାଦ ଏବଂ ଅଧିକାରର ସୀମା ସୃଷ୍ଟି ହେଲା । ଏହି ରୁଦ୍ରଗଣ ଗୋଟିଏ ଗୋଷ୍ଠୀର ସହାୟତା କରି ଅନ୍ୟ ଗୋଷ୍ଠୀର ଅଶେଷ ଧ୍ୱଂସ ସାଧନ କଲେ । ସେମାନଙ୍କର ଘୋଡ଼ା, ଗାଈ, ମଇଁଷି ଓ ମେଣ୍ଢା ଆଦି ପଶୁ ମାନଙ୍କ ବଳକାରରେ ନେଇ ଯାଉଥିଲେ । ଋକ୍‌ବେଦରେ ଆର୍ଯ୍ୟ ଗୋଷ୍ଠୀର ଦେବଗଣ ତାଙ୍କର ସୁରକ୍ଷା ପାଇଁ ରୁଦ୍ରଙ୍କ ବରଦ୍ୱାର ପ୍ରାର୍ଥନା କରି ସାହାଯ୍ୟ ଲାଭ କରିଥିବା ଜଣାଯାଏ । ଆର୍ଯ୍ୟମାନେ ଗୋ, ମେଷପାଳକ ଏବଂ ରୁଦ୍ରମାନେ ଶିକାରୀ ତଥା ଗୁହାବାସୀ ଥିବା ଜଣାଯାଏ ।

ମହେଞ୍ଜୋଦାରୋ, ହରପ୍ପା ଓ ରାଜସ୍ଥାନର କାଲିବଙ୍ଗାରୁ ମିଳିଥିବା ଶିବଙ୍କ ମସ୍ତକରେ ଶିଙ୍ଗର କଳ୍ପନାକୁ ନୂତନ ପ୍ରସ୍ତର ଯୁଗର ସଂସ୍କୃତିର ପ୍ରାନ୍ତକାଳରେ ଅବସ୍ଥାପିତ କରାଯାଇଥିବାବେଳେ ମାଣିକମୁଣ୍ଡାର ଗୁମ୍ଫାର ଚିତ୍ର ପ୍ରାଚୀନ ପ୍ରସ୍ତର ଯୁଗର ଶେଷ ପର୍ଯ୍ୟାୟର ବୋଲି ଧରାଯାଏ ।

ପ୍ରସ୍ତର ଯୁଗର ଆରମ୍ଭରେ ଛବିଚିତ୍ର ଅଙ୍କନ ପ୍ରଚଳିତ ଥିଲା ପରନ୍ତୁ ପ୍ରାଚୀନ ମନୁଷ୍ୟ ଧାଡ଼ି ଅଙ୍କନ କରିବାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲା । ଅଳ୍ପ କେତେବର୍ଷ ପୂର୍ବେ ଓଡ଼ିଶାରେ ପ୍ରାଗୈତିହାସିକ ଗୁହାଚିତ୍ର ଲୋକଲୋଚନକୁ ଆସିପାରିଛି । * କଳାହାଣ୍ଡି ଜିଲ୍ଲାର ଖଡ଼ିଆଳ ନିକଟସ୍ଥ ଯୋଗିମଠ ଡୋଙ୍ଗର ଗୁମ୍ଫା ମଧ୍ୟରେ ଈଷତ୍ ପୀତ ବାଦାମ ରଙ୍ଗ ବା ଗେରୁମାଟିରେ ଅଙ୍କିତ ଚିତ୍ର ଗୁଡ଼ିକ ପରିଦୃଷ୍ଟ ହୁଏ । ଏହି ଚିତ୍ର ଗୁଡ଼ିକ ମଧ୍ୟ ଧାଡ଼ିରେ ଅଙ୍କିତ ହୋଇ ନଥିବାରୁ ଏହା ମାଣିକମୁଣ୍ଡା ଚିତ୍ରପଟ୍ଟ ସହିତ ସମକାଳୀନ ।

---

*ଖଡ଼ିଆଳର ଇତିହାସ— ଶ୍ରୀମତୀ ରାଜଶ୍ରୀ ଦେବୀ



# ଅଷ୍ଟମ ପରିଚ୍ଛେଦ

## ବେଦବ୍ୟାସର ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତି

ପ୍ରସ୍ତର ଯୁଗୀୟ ସଂସ୍କୃତିର ଶେଷ ପର୍ଯ୍ୟାୟରେ ଧାତବ ଯୁଗ ବିକାଶ ଲାଭ କଲା । ଏହି ଭୂଖଣ୍ଡ ନିକଟସ୍ଥ ଢେଙ୍କାନାଳର ଭୀନଶରିଆ ଏବଂ ଟିଶିଂ ଅଞ୍ଚଳରୁ ଯୁଦ୍ଧରେ ବ୍ୟବହୃତ ଦୁଇ ପଟରେ ଧାର ଥାଇ ଟାଙ୍ଗିଆ, ଧାତୁ ଯୁକ୍ତ ପଥରକୁ ତରଳାଇ ଲମ୍ବାଳିଆ ନିହଣ ପରି ଅସ୍ତ୍ର ଶସ୍ତ୍ର ମିଳିଛି । ଏହା ତାମ୍ର ଓ ବ୍ରୋଞ୍ଜ ଯୁଗୀୟ ଅସ୍ତ୍ର ଶସ୍ତ୍ର ବୋଲି ଐତିହାସିକଙ୍କ ମତ । ତାମ୍ର ଓ ବ୍ରୋଞ୍ଜ ଯୁଗ ପରେ ଲୌହ ଯୁଗ ଆସିଲା । ଖ୍ରୀଷ୍ଟପୂର୍ବ ପାଞ୍ଚ ଶତ ବର୍ଷଠାରୁ ଖ୍ରୀଷ୍ଟୀୟ ତିନି ଶହ ବର୍ଷ ମଧ୍ୟରେ ଲୌହ ଯୁଗର ସମୟ ବୋଲି ନିର୍ଦ୍ଧାରିତ ହୋଇଛି । ଏହି ସମୟରେ ଲୁହା ପଥରକୁ ଅଗ୍ନିରେ ତରଳାଇ ସେଥିରୁ ବର୍ଚ୍ଛା, କଟୁରି, ଫୋଡ଼ଣି, ବଟାଳି, ଖଣ୍ଡା, ଟାଙ୍ଗିଆ ପ୍ରଭୃତି ନିର୍ମାଣ କୌଶଳ ଉଦ୍ଭାବିତ ହେଲା ।

ଧାତବ ଦ୍ରବ୍ୟର ବ୍ୟବହାର ଫଳରେ ସାମାଜିକ ପରିବର୍ତ୍ତନ ଅଧିକ ଦ୍ରୁତ ହେଲା । ସର୍ପଭୂଷଣ, ବ୍ୟାଘ୍ର ଚର୍ମ ଉପରେ ତପସ୍ୟାରତ ଶିବଙ୍କର ତ୍ରିଶୂଳ ତାମ୍ର ଧାତୁରେ ନିର୍ମିତ ହେଲା ପରେ ପରେ ଲୌହରେ ନିର୍ମାଣ ହୋଇଥିବା ଜଣାଯାଏ । ଓଡ଼ିଶାର କେତେକ ଅଭିଲେଖରୁ ଜଣାଯାଏ ମହେନ୍ଦ୍ରଗିରି ଓ ଅନ୍ୟ କେତେକ ପାର୍ବତ୍ୟ ଅଞ୍ଚଳରେ ପୁଳିନ୍ଦ; କିରାତ, ଶବର ପ୍ରଭୃତି ଆଦିମ ଅଧିବାସୀମାନେ ଶିବଙ୍କୁ ଲିଙ୍ଗ ରୂପେ ପୂଜା କରୁଥିଲେ । ଆର୍ଯ୍ୟମାନେ ପୂର୍ବ ଆଡ଼କୁ ଅଗ୍ରସର ହେବା ସମୟରେ ମଧ୍ୟ ଏହି ଭୂଖଣ୍ଡରେ ଆଦିମଲୋକମାନଙ୍କର ଶାସନ ଚାଲିଥିଲା । ଆର୍ଯ୍ୟମାନଙ୍କର ବାସସ୍ଥାନ, ରାଜନୈତିକ ଓ ସାମାଜିକ ଅବସ୍ଥାର ବିବରଣ ଋଗ୍‌ବେଦରୁ ମିଳିଥାଏ । ଆର୍ଯ୍ୟମାନଙ୍କର ପାଞ୍ଚଟି ଶାଖା ଯଥା—ପୁରୁ, ତୁର୍ବସୁ, ଅନୁ, ଦ୍ରୁହ୍ୟ ଓ ଯଦୁମାନେ ବିଭିନ୍ନ ଅଞ୍ଚଳରେ ରାଜ୍ୟ ଶାସନ କରୁଥିଲେ । ମହର୍ଷି

ପରାଶର ଏହି ଭୂଖଣ୍ଡକୁ ଆସିବା ସମୟରେ ଆଦିବାସୀ କୈବର୍ତ୍ତ ରାଜ ଏହି ଅଞ୍ଚଳରେ ରାଜ୍ୟ ଶାସନ କରୁଥିଲେ । ଏହି ଅଞ୍ଚଳରେ ପାର୍ବତ୍ୟ ଉପତ୍ୟକା-ମାନଙ୍କରେ ଆଦିମ ଅଧିବାସୀମାନେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠିରେ ବିଭକ୍ତ ହୋଇ ଜଣେ ଜଣେ ଦଳପତିଙ୍କ ଅଧୀନରେ ରାଜ୍ୟ ସ୍ଥାପନ କରିଥିଲେ । ଏହି କ୍ଷୁଦ୍ର ରାଜ୍ୟମାନଙ୍କରେ ଆଦିବାସୀ ରାଜା ମାନଙ୍କ ମଧ୍ୟରେ ସତ୍ୟବତୀଙ୍କୁ ନେବାପାଇଁ ନିଜେ ଖ୍ରୀଷ୍ଟ ଆସିଥିବା ତାତ୍ପର୍ଯ୍ୟ ପୂର୍ଣ୍ଣ । ଆର୍ଯ୍ୟମାନେ ଧାତବ ଯୁଗରେ ବିଶେଷ ଅଗ୍ରଗତି କରିଥିଲେ ମଧ୍ୟ ଆଦିବାସୀମାନେ ସମସାମୟିକ ଅଗ୍ରଗତି କରିଥିବାର ଜଣାଯାଏ । କୈବର୍ତ୍ତ ରାଜ ନୌକାର ନିର୍ମାଣ କୌଶଳ ଶିଖିସାରି ଥିଲେ । ଓଡ଼ିଶାର ଉପକୂଳ ସମୁଦ୍ରର ନାମ ସେତେବେଳେ 'ପୂର୍ବାମ୍ଭୋଧି" ନାମରେ ପରିଚିତ ଥିଲା । ପରେ ପରେ କଳିଙ୍ଗ ଜାତି ପୂର୍ବାମ୍ଭୋଧିକୁ ନିଜର କ୍ଷମତା ବଳରେ "କଳିଙ୍ଗ ସାଗର" ନାମ ଦେଇଥିଲେ । ବ୍ରାହ୍ମଣୀ ନଦୀରେ ପୂର୍ବାମ୍ଭୋଧିକୁ ନୌଚଳାଚଳ ହୋଇ-ଥିବା ସମ୍ଭବ । ଉପକୂଳକୁ ଜଙ୍ଗଲ ଜାତ ଦ୍ରବ୍ୟ ଯୋଗାଇ ସେଠାରୁ ଲୁଣ ପ୍ରଭୃତି ସାମଗ୍ରୀ ପାର୍ବତ୍ୟ ଅଞ୍ଚଳକୁ ଆଣୁଥିଲେ ।

ବେଦବ୍ୟାସ ଭୂଖଣ୍ଡରେ ଆଦିମାନବ ବାସ କରୁଥିଲେ ତାର ପ୍ରମାଣ ବିଭିନ୍ନ ସମୟରେ ପରିବ୍ରାଜକମାନଙ୍କର ଭ୍ରମଣ ବୃତ୍ତାନ୍ତରୁ ଜଣାପଡ଼େ । ପରିବ୍ରାଜକ ଟଲେମି ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ କହିଛନ୍ତି ଗଙ୍ଗାନଦୀ ପାର ହେଲାପରେ ଶବର ଦେଶ ପଡ଼େ ଏବଂ ସେହି ଦେଶରେ ବହୁତ ହୀରା ମିଳେ । ସେ ମୁଣ୍ଡାମାନଙ୍କୁ ମଣ୍ଡି (Mandi) ବୋଲି କହିଥିବାର ଉଲ୍ଲେଖ ଅଛି ଏବଂ ଶବରମାନଙ୍କୁ ସବରାଇ ବୋଲି କହିଛନ୍ତି । ଖ୍ରୀଷ୍ଟୀୟ ପ୍ରଥମ ଶତକରେ ପରିବ୍ରାଜକ ପ୍ଲିନି ଶବରମାନଙ୍କୁ 'ଶୁରାଇ' ବୋଲି ବର୍ଣ୍ଣନା କରିଛନ୍ତି । ଜଗବନ୍ଧୁ ସିଂହ 'ପ୍ରାଚୀନ ଉତ୍କଳ'ରେ ଶ୍ରୀଯୁତ ଟଲୋ ଲିପି ପାଠକରି ଗୁପ୍ତମାନେ ଶବର ବଂଶୀୟ ଥିଲେ ବୋଲି ମତ ଦେଇଛନ୍ତି । ଶବର ଅର୍ଥ, "ମୟୂରପୁଚ୍ଛୋ ପରିଧାନୋ ମ୍ଳେଚ୍ଛଃ କିରାତଃ ପତ୍ର ପରିଧାନେ । ଶବରଃ" (ବିଶ୍ୱକୋଷ ପୃ-୨୫୦) ସଂସ୍କୃତ ଭାଷାରେ ଶବର ପାର୍ବତ୍ୟ ଜାତି ଏବଂ ବର୍ବର ଅର୍ଥରେ ବ୍ୟବହୃତ ହୋଇଛି । ଆତ୍ରେୟ ବ୍ରାହ୍ମଣ ଗ୍ରନ୍ଥରେ ଏହି ଶବରମାନେ ବିଶ୍ୱାମିତ୍ରଙ୍କ ପୁତ୍ରର ବଂଶଧର ବୋଲି କଥିତ । ସେମାନେ ପିତାଙ୍କର ଆଜ୍ଞା ପରିପାଳନ କରି ନପାରିବାରୁ ପରେ ଅଭିଶପ୍ତ ହୋଇ ଶବର ଭାବରେ ବଣରେ ବାସ କରିବାକୁ ଲାଗିଲେ ।

ପ୍ରଥମେ ବ୍ରାହ୍ମଣୀ ନଦୀ ଓ ମହାନଦୀ ମଧ୍ୟଭୂଖଣ୍ଡରେ ଶବର ଏବଂ ଅନ୍ୟାନ୍ୟ ଆଦିବାସୀମାନେ ବସବାସ କରି ଆସୁଥିଲେ । ଢେଙ୍କାନାଳର ନାମକରଣ 'ଢେଙ୍କା' ଶବର ନାମରୁ ଆସିଛି । ପ୍ରାଚୀନ କାଳରେ ଢେଙ୍କାନାଳ ଅଞ୍ଚଳରେ ଢେଙ୍କା ନାମକ ଶବର ଶାସନ କରୁଥିଲେ ବୋଲି ଜଣାଯାଏ । ଏହି ଏହି ଶାସନ ଶୁଳ୍‌କ ମାନଙ୍କ ରାଜତ୍ୱ ପୂର୍ବର କଥା । ★ ପ୍ରଥମ ଶତକରେ ପ୍ଲିନି ତାଙ୍କର "Natural History" ପୁସ୍ତକରେ ଭାରତୀୟ ବଂଶୋଦ୍ଭବ ବିଷୟରେ ମୁଣ୍ଡା ଓ ଶବରମାନଙ୍କ ବିଷୟରେ ଲେଖିଛନ୍ତି— ଏମାନେ ପାଲ୍‌ଲହଡ଼ା ନିକଟସ୍ଥ ମାଲ୍ୟବନ୍ତଗିରି ନିକଟରେ (Mount Meleus) ବାସ କରୁଥିଲେ । ପ୍ଲିନି ଏହାକୁ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକର ଗ୍ରୀକ୍ ପରିବ୍ରାଜକ ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଉଦ୍ଧାର କରିଛନ୍ତି । ଗ୍ରୀକ୍ ଲେଖକ ମାଲ୍ୟବନ୍ତଗିରି ନିକଟରେ ଓରେଟସ୍ (Oretes) ମାନେ ବାସ କରୁଥିବା ବର୍ଣ୍ଣନା କରିଛନ୍ତି । ସେଇଥିରୁ ଓରେଟସ୍‌ର ସଂସ୍କୃତ ଶବ୍ଦ ଓଡ୍ର ବା ଓଡ଼ିଶା ଆସିଛି । ଶବର ମାନେ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ଛୋଟ ଛୋଟ ରାଜ୍ୟ ଶାସନ କରୁଥିଲେ ଏବଂ ପରେ ଗଜପତି ରାଜା ମାନଙ୍କର କରଦ ରାଜାରୂପେ ଶାସନ କରୁଥିଲେ । ଗଞ୍ଜାମର ମହେନ୍ଦ୍ର ଗିରି ଅଞ୍ଚଳରେ ଗୋକର୍ଣ୍ଣେଶ୍ୱର ଶିବଙ୍କୁ ପୂଜା କରୁଥିଲେ । ଖ୍ରୀଷ୍ଟିୟ ପଞ୍ଚମ ଶତାବ୍ଦୀର ଶେଷରେ ପୂର୍ବଗଙ୍ଗ ବଂଶର ନରପତି କାମାର୍ଣ୍ଣବ ତତ୍କାଳୀନ କଳିଙ୍ଗ ରାଜ୍ୟର ଶବର ରାଜା ବାଳାଦିତ୍ୟଙ୍କୁ ପରାସ୍ତ କରି ଗଙ୍ଗବଂଶ ସ୍ଥାପନ କରିଥିବାର ଜଣାଯାଏ । ବର୍ତ୍ତମାନ ସୁନ୍ଦର ଗଡ଼ରେ ଶବର, ସଉରା ବା ସଂହରା, ଲୋଧା ଶ୍ରେଣୀର ଲୋକମାନେ ବାସକରୁଛନ୍ତି । ★

ବେଦବ୍ୟାସ ଭୂଖଣ୍ଡରେ କୈବର୍ତ୍ତ ରାଜ ରାଜ୍ୟଶାସନ କରୁଥିଲେ । କୈବର୍ତ୍ତମାନେ ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଶାସନ କରୁଥିଲେ । କୈବର୍ତ୍ତ ରାଜ-କନ୍ୟା କାରୁବାକୀଙ୍କ ପାଇଁ ଅଶୋକଙ୍କ କଳିଙ୍ଗ ଯୁଦ୍ଧ ହୋଇଥିବା କିମ୍ବଦନ୍ତୀ ପ୍ରଚଳିତ ଅଛି ଏବଂ ତେଲୁଗୁ ଭାଷାରେ ମଧ୍ୟ ଏଥିପାଇଁ ସାହିତ୍ୟ ସୃଷ୍ଟି ହୋଇଛି । ❋ ମତ୍ସଜୀବି ଜାତିର ରାଜକନ୍ୟା କାରୁବାକୀଙ୍କ ସୌନ୍ଦର୍ଯ୍ୟ ଓ ଚରିତ୍ରରେ ମୁଗ୍ଧ ହୋଇ କଳିଙ୍ଗ ରାଜକୁମାର ତାଙ୍କର ପାଣିଗ୍ରହଣ

---

★ History of Orissa— N. K. Sahu P. 141.

★ Orissa District Gazetteers, Sundaragarh, Appendix— II

❋ ଓଡ଼ିଶା ଇତିହାସ— ଡଃ ହରେକୃଷ୍ଣ ମହତାବ ।

କରିଥିଲେ । ସମ୍ରାଟ୍ ଅଶୋକ କାରୁବାକୀଙ୍କର ଅନୁପମ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ବାର୍ତ୍ତାପାଇ ତାଙ୍କୁ ଲାଭ କରିବା ପାଇଁ ତାଙ୍କର ରାଢ଼ଗୁପ୍ତ ନାମକ ମନ୍ତ୍ରୀଙ୍କ ଦ୍ୱାରା ପ୍ରରୋଚିତ ହୋଇ କାରୁବାକୀଙ୍କ ଲୋଭରେ ଇତିହାସ ପ୍ରସିଦ୍ଧ କଳିଙ୍ଗ ଯୁଦ୍ଧରେ ବ୍ୟାପୃତ ହୋଇଥିଲେ । ମହାପରାକ୍ରମୀ ଅଶୋକଙ୍କ ବିଶାଳ ସେନା ବାହିନୀ ହସ୍ତରେ କଳିଙ୍ଗ ଯୁବରାଜ ନିହତ ହେବାପରେ ତାଙ୍କର ଅନିନ୍ଦ୍ୟ ସୁନ୍ଦରୀ ରାଣୀ କାରୁବାକୀ ଅତ୍ୟନ୍ତ ନିପୁଣତାର ସହ ଅଶୋକଙ୍କ ସହ ଯୁଦ୍ଧ କରିଥିଲେ ଓ ଶେଷରେ ବିଜିତା ହୋଇ ମଗଧକୁ ବଳ ପୂର୍ବକ ନିଆ ହୋଇଥିଲେ । କାରୁବାକୀଙ୍କ ସହ ଅଶୋକଙ୍କ ଯୁଦ୍ଧ ଓ ବଳ ପୂର୍ବକ ମଗଧ ନେଇ ଯିବାର ଦୃଶ୍ୟ, ଭୁବନେଶ୍ୱରର ଉଦୟଗିରିର ରାଣୀ ଗୁମ୍ଫାରେ ଚିତ୍ରିତ ହୋଇଛି । କଥିତ ଅଛି ବୀରପତ୍ନୀ କାରୁବାକୀ କଳିଙ୍ଗ ଜନତାର ମଙ୍ଗଳ ପାଇଁ ଅଶୋକଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିବା ପୂର୍ବରୁ, ନ୍ୟଗ୍ରୋଧ ଉପଗୁପ୍ତ ପ୍ରଭୃତି ବହୁ ସୈନ୍ୟଙ୍କ ମଧ୍ୟବର୍ତ୍ତୀତାରେ ପ୍ରକାଶ କଲେ ଯେ ଅଶୋକ ସ୍ୱ-ଧର୍ମକୁ ନ ଆସିଲେ ସେ ବିବାହ କରିବେ ନାହିଁ । ତାପରେ ଅଶୋକ ବୌଦ୍ଧ ଧର୍ମ ଗ୍ରହଣ କଲେ ଏବଂ ତାଙ୍କର ଦ୍ୱିତୀୟ ସର୍ତ୍ତ ଥିଲା ସ୍ୱ-ବୀରତ୍ୱର ନିଦର୍ଶନ ପୂର୍ବକ ନିଜ ସହିତ ଅଶୋକଙ୍କ ଯୁଦ୍ଧ ଚିତ୍ର ଉଦୟଗିରିର ରାଣୀ ଗୁମ୍ଫାରେ ଚିତ୍ରିତ ହେଉ, ତାହା ହିଁ ହେଲା । ଅଭିଲେଖମାନଙ୍କରେ ଅଶୋକଙ୍କ ଦ୍ୱିତୀୟା ମହିଷୀ 'କାଲୁବାକୀ' ଥିବାର ଜଣାଯାଏ । 'କାରୁବାକୀ' ନାମରେ ମତ୍ସ୍ୟଜୀବୀ ବର୍ତ୍ତମାନ ସୁଦ୍ଧା ଅଛନ୍ତି । ଅଶୋକଙ୍କ କଳିଙ୍ଗ ବିଜୟ ପରେ କଳିଙ୍ଗକୁ ଚେଟି ରାଜ୍ୟ ବୋଲି ଆଖ୍ୟା ଦେଇଥିଲେ । 'ଚେଟି'ର ଅର୍ଥ ହେଉଛି ମତ୍ସ୍ୟ-ଜୀବୀ । ଏହି ଚେଟୀ ରାଜ୍ୟ କ୍ରମେ ଚେଦି ରାଜ୍ୟ ବୋଲି କଥିତ ହେଲା । ✻

ମହର୍ଷି ଯାଜ୍ଞବଲକ୍ୟ, ଗୌତମ, ବୃଦ୍ଧ ହାରିତ, କଳ୍କି ଓ ଓ ପରଶୁରାମ ପ୍ରଭୃତିଙ୍କ ମତରେ କ୍ଷତ୍ରିୟ ଔରସରୁ ବୈଶ୍ୟ ଗର୍ଭଜାତ ସନ୍ତାନମାନେ ମାହିଷ୍ୟ ନାମରେ ପରିଚିତ । ପଦ୍ମ ପୁରାଣ, ବ୍ରହ୍ମ ବୈବର୍ତ୍ତ ପୁରାଣ, ବ୍ୟାସହକ୍ତ ଚଣ୍ଡ କୌଶିକୀ ଓ କୁଳାଷ୍ଟକ ପ୍ରଭୃତି ଶାସ୍ତ୍ରାନୁସାରେ ଉପରୋକ୍ତ ସନ୍ତାନମାନେ କୈବର୍ତ୍ତ ବା କେଉଟ ନାମରେ ପରିଚିତ । ✻ ୨ ଶ୍ରୀଯୁକ୍ତ ସେବାନନ୍ଦ ଷଡ଼ଙ୍ଗୀ ତାଙ୍କର ତାମ୍ରଲିପ୍ତ ଇତିହାସ ପୁସ୍ତକରେ

---

✻ ଓଡ଼ିଶା ଇତିହାସ—ହରେକୃଷ୍ଣ ମହତାବ ।

✻ ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ ।

ଓଡ଼ିଶାର ଗଜପତି ସମ୍ରାଟମାନେ ମାହିଷ୍ୟ କ୍ଷତ୍ରିୟ ବୋଲି ଦର୍ଶାଇଛନ୍ତି । ରସୁଲକୋଣ୍ଡା (ଭଞ୍ଜନଗର) ଅଞ୍ଚଳରୁ ପ୍ରାପ୍ତ ନେଟ୍ଟ ଭଞ୍ଜଙ୍କର ଏକ ତାମ୍ର ଶାସନରୁ ଜଣାଯାଏ କ୍ଷତ୍ରିଦେବୀ, କୈବର୍ତ୍ତଦେବୀ ଓ ରାଜକୁମାରୀ ମେଘାବଳୀ ଦେବୀମାନଙ୍କର ଆତ୍ମାର ସଦ୍‌ଗତି ସକାଶେ ତାମ୍ର ଶାସନଟି ପ୍ରଦତ୍ତ ହୋଇଥିଲା । ଏଥିରୁ ଅନୁମିତ ହୁଏ ରାଜାମାନେ ପୂର୍ବ କାଳରେ ଜାତି ବର୍ଣ୍ଣ ନିର୍ବିଶେଷରେ ବିବାହ କରୁଥିଲେ । ❊

ବେଦବ୍ୟାସରେ ପୂର୍ବରୁ ଧୀବରରାଜ ରାଜତ୍ୱ କରୁଥିଲେ ବର୍ତ୍ତମାନ ସେହି ଅଞ୍ଚଳରେ ଧୀବର ବା କୈବର୍ତ୍ତ ଦୁଇ ଶ୍ରେଣୀର ବାସ କରୁଛନ୍ତି ସେମାନେ ହେଲେ ଝରା ଏବଂ କେଉଟ । ଝରାମାନେ ସାଧାରଣତଃ ବଣେଇ ଏବଂ ପାନପୋଷ ସବ୍‌ଡିଭିଜନରେ ବାସ କରନ୍ତି । ପ୍ରାଚୀନ କାଳରେ ଝରାମାନେ ବ୍ରାହ୍ମଣୀ, ଶଙ୍ଖ ଓ କୋଇଲି ନଦୀର ବାଲିରୁ ସ୍ୱର୍ଣ୍ଣକଣା ସଂଗ୍ରହ କରୁଥିଲେ । ଏମାନେ ଦ୍ରାବିଡ଼ ଓ ଗଣ୍ଡବଂଶୋଦ୍ଭବ । ❊ କେଉଟମାନେ ସୁନ୍ଦରଗଡ଼ ସଦର ତଳସରା, ଲେଫ୍ରିପଡ଼ା, ବଣେଇ, ଡଷ୍ଟା, ରାଜବୋଗା ଓ ରଘୁନାଥ ପାଲିଥାନା ମାନଙ୍କରେ ବାସ କରନ୍ତି । ଏମାନେ ମତ୍ସ୍ୟଜୀବୀ, ଜଗତଗଣ୍ଡ ଠାରେ ଇବ ନଦୀ କୂଳରେ ଚୈତ୍ର ପୂର୍ଣ୍ଣିମା ଦିନ 'ଡାହି' ପୂଜା କରି ମାଛଧରା ଉପକରଣମାନ ପୂଜା କରନ୍ତି । ପୂର୍ବରୁ ବିବାହିତା ମହିଳାମାନେ ମଥାରେ ସିନ୍ଦୂର ଲଗାଉ ନଥିଲେ କିନ୍ତୁ ବର୍ତ୍ତମାନ କେହି କେହି ଲଗାଇବା ଆରମ୍ଭ କଲେଣି ।

ଆଦିମ କାଳରୁ ଯେଉଁ ଅଧିବାସୀ ମାନେ ଏହି ଅଞ୍ଚଳମାନଙ୍କରେ ବାସ କରୁଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ଥାନାନ୍ତରୀକରଣ (Migration) ପ୍ରକ୍ରିୟାରେ ଅନ୍ୟସ୍ଥାନକୁ ଚାଲି ଗଲେଣି ପୁଣି କେତେକ ଜାତି ଏହି ଅଞ୍ଚଳକୁ ତାଙ୍କର ନିଜର ବାସଭୂମି ରୂପେ ଆଦରି ଗଲେଣି ତାର କଳନା ନାହିଁ । ବର୍ତ୍ତମାନ ଚାଳିଶିରୁ ଊର୍ଦ୍ଧ୍ୱ ଆଦିବାସୀ ଶ୍ରେଣୀ ଏହି ଅଞ୍ଚଳରେ ଦେଖାଯାଆନ୍ତି । ସେମାନେ ହେଲେ ଓରାଓଁ, ମୁଣ୍ଡା, ଖରିଆ ବା ଖଡ଼ିଆ, ଖରୱାର, କିଷାନ,

★ Orissa District Gazalleers, Sundargarh— P. 106.

❊ ଓଡ଼ିଆ ଭାଷାର ଇତିହାସ— ପଣ୍ଡିତ ବିନାୟକ ମିଶ୍ର

ଭୂୟାଁ, ଭୂମିଜ, ଗଣ୍ଡ, ବାଞ୍ଜାର, ବାଥୁଡ଼ି, ବିଞ୍ଝାଲ, ଗଦବା, ହୋ, କନ୍ଧ, କୋହ୍ଲ, ଲୋଧା, ମାଙ୍କିଡ଼, ପରଜା, ସାନ୍ତାଳ, ସଉରା (ସହାଁର ବା ଶବର) ପ୍ରଭୃତି ପ୍ରଧାନ ।

ବହୁ ପ୍ରାଚୀନ କାଳରୁ ଭାରତର ଉତ୍ତରାଞ୍ଚଳରୁ ଗଣ୍ଡମାନେ ଓଡ଼ିଶାକୁ ଆସିଥିବାର ପ୍ରବାଦଅଛି । ଗଣ୍ଡମାନେ ବିନ୍ଧ୍ୟ-ସାତପୁରା ପ୍ରଦେଶରୁ ଆସିଥିଲେ । * ଫୁଲଝର, ସାରଙ୍ଗଗଡ଼, ବରଗଡ଼ ଓ ରାୟଗଡ଼ର ଗଣ୍ଡ ରାଜାମାନେ ଗଡ଼ମନ୍ଦରରୁ ଆସି ନାଗପୁର ଅନ୍ତର୍ଗତ ବୈରଗଡ଼ରେ ଥିଲେ ସେଠାରୁ ବିତାଡ଼ିତ ହୋଇ ଏହି ଅଞ୍ଚଳକୁ ଆସିଥିଲେ । ଗଣ୍ଡମାନଙ୍କର ପ୍ରଧାନ ଦେବତା 'ଲିଙ୍ଗ' । ତାଙ୍କ ପୀଠ ବାରପାହାଡ଼ ଶୃଙ୍ଗରେ । ବାରପାହାଡ଼ 'ସାତପୁରା' ପର୍ବତର ଚତୁର୍ଦ୍ଦିଗରେ ଅବସ୍ଥିତ ତେଣୁ ଏମାନେ ସମ୍ବଲପୁର ଅଞ୍ଚଳକୁ ଆସି ହିରାକୁଦର ଦକ୍ଷିଣ ପାର୍ଶ୍ଵ ପାହାଡ଼ର ନାମ ବାରପାହାଡ଼ ରଖିଥିଲେ । ସୁରେନ୍ଦ୍ର ସାଏଙ୍କ ଜାତୀୟ ଆନ୍ଦୋଳନ ବେଳେ ଗଣ୍ଡମାନେ ସହଯୋଗ କରିଥିବାରୁ ସାଧାରଣ ଲୋକେ ଗଣ୍ଡ ଉତ୍ପାତକୁ "ଗଣ୍ଡମାରୁ" ଆଖ୍ୟା ଦେଇଥିଲେ । ଏମାନେ ବଲାଙ୍ଗୀର, ସୁନ୍ଦରଗଡ଼ ଏବଂ ରାଜଗାଙ୍ଗପୁର ଥାନା ଅଞ୍ଚଳରେ ବେଶୀ ଦେଖାଯାଆନ୍ତି । ବଣେଇର ମୁଖ୍ୟ ବ୍ୟକ୍ତିଙ୍କୁ 'ମହାପାତ୍ର' ବା 'ଦଣ୍ଡପାଟ' ବୋଲିକୁହନ୍ତି । ଏମାନେ ସାମନ୍ତ ରାଜାରୂପେ କ୍ଷୁଦ୍ର ଅଞ୍ଚଳରେ ଶାସନ କରନ୍ତି, ଏବଂ ବଣେଇର ପୂର୍ବତନ ରାଜାଙ୍କୁ ରାଜ୍ୟ ଶାସନରେ ସାହାଯ୍ୟ କରୁଥିଲେ । ଏମାନଙ୍କ ମଧ୍ୟରେ ଛଅ ପ୍ରକାର ବିଭାଗ ଦେଖାଯାଏ ଯଥା— ନେଟି, ଅଟି, ଜଗତ, ଗୁରୁଦିଆ, ମରେଇ, ପାଉଟେଲ । ଏମାନଙ୍କର ଗୋତ୍ର ବାଘ, କଣାମାଛ, ଡେ଼ଲପୁରା, (ଭରଡିଆ ପକ୍ଷୀ), କଚ୍ଛପ, ନାଗ ଇତ୍ୟାଦି । ଏମାନଙ୍କର ବର୍ଗ ବା ସାଙ୍ଗିଆ ନାୟକ, ପ୍ରଧାନ ଇତ୍ୟାଦି ଦେଖାଯାଏ । ଭୌମକର ରାଜବଂଶ ଅଧୀନରେ ଅନେକ ଗୁଡ଼ିଏ ସାମନ୍ତ ରାଜା ରାଜ୍ୟ ଶାସନ କରୁଥିଲେ । ସେମାନଙ୍କ ମଧ୍ୟରୁ ତୁଙ୍ଗବଂଶ ଅନ୍ୟତମ । ସେ ପାଲଲହଡ଼ାର ଚତୁଃପାର୍ଶ୍ଵ ବା ଯମଗର୍ତ୍ତ ମଣ୍ଡଳର ଅଧିପତି ଥିଲେ । ତାଙ୍କର ଏକ ଦାନ ପତ୍ରରେ'ପରମମାହେଶ୍ଵର'ସମଧିଗତ ପଞ୍ଚମ ହା ଶବ୍ଦ ଅଷ୍ଟାଦଶ ଗୋଣ୍ଡମାଧିପତି' ଥିଲେ ଅର୍ଥାତ ବିନୀତ ତୁଙ୍ଗଦେବ ଆଦିମ ଅଧିବାସୀ ଗଣ୍ଡଜାତି ଅଧ୍ୟୁଷିତ ୧୮ ଗୋଟି ଅଞ୍ଚଳର ଶାସକ ଥିଲେ । ଢେଙ୍କାନାଳରୁ ପ୍ରାପ୍ତ ତାମ୍ର ଶାସନରୁ

* ସମ୍ବଲପୁର ଇତିହାସ— ଶ୍ରୀ ଶିବପ୍ରସାଦ ଦାଶ

ଜୟସିଂହ ନାମକ ଏକ ସାମନ୍ତ ରାଜା ସମସ୍ତ ଗୋନ୍ଦ୍ରମ ଅଞ୍ଚଳ ( ଗଣ୍ଡଜାତି ଅଧୁଷିତ ଅଞ୍ଚଳ ) ଶାସନ କରୁଥିବାର ଜଣାଯାଏ । ଏହା ଭୌମାବ୍ଦ ୭୩୭-୭୪୦ ବା ଖ୍ରୀ ୮୩୫-୮୩୯୨ ମଧ୍ୟରେ ବୋଲି ଜଣାଯାଏ । ତାମ୍ର ଶାସନଟି ମନ୍ଦାକିନୀ ନାମକ ସ୍ଥାନରୁ (ମନ୍ଦାକିନୀ କୂଳବାସବାତ୍) ଅଞ୍ଚଳରୁ ପ୍ରଦତ୍ତ ହୋଇଥିଲା । ଅର୍ଥାତ୍ ମନ୍ଦାକିନୀ ନାଳ ରୂପେ ଚିହ୍ନିତ ଅର୍ଥାତ୍ ଗଣ୍ଡ ଲୋକମାନେ ଢେଙ୍କାନାଳ, ସମ୍ବଲପୁର, ସୁନ୍ଦରଗଡ଼ ଅଞ୍ଚଳରେ ବାସ-କରୁଥିଲେ । ❋ ଏମାନେ 'ଗୁଣ୍ଡି' ଭାଷା ପ୍ରାଚୀନ କାଳରେ ବ୍ୟବହାର କରୁଥିଲେ । ବର୍ତ୍ତମାନ ସମସ୍ତେ ଓଡ଼ିଆ ଭାଷା ଓ ଲିପି ବ୍ୟବହାର କରୁଛନ୍ତି ।

## ଭୂୟାଁ—

ଭୂୟାଁମାନେ ଅଧିକାଂଶ ବଣେଇଗଡ଼ ଅଞ୍ଚଳରେ ଦେଖାଯାଆନ୍ତି । ଏମାନେ କେନ୍ଦୁଝରର ଉତ୍ତର ଅଞ୍ଚଳ, ଢେଙ୍କାନାଳର ପଶ୍ଚିମ ଅଞ୍ଚଳ, ପାଲ୍‌ଲହଡ଼ା, ତାଳଚେର, ସୁନ୍ଦରଗଡ଼ର ଦକ୍ଷିଣ-ପୂର୍ବ ଅଞ୍ଚଳରେ ଦେଖା-ଯାଆନ୍ତି । ଆସାମ, ବଙ୍ଗଳାରେ ଏମାନେ ବଡଭୂୟାଁ ନାମରେ ପରିଚିତ । ଏମାନଙ୍କର ଶ୍ରେଣୀ ବିଭାଗ ଯଥା—ରାଜକୋଳୀ, ପାବନ, ରାଉତାଳି, ପରଜା, ଦଣ୍ଡସେନା, ସାନ୍ତାଳି ଏବଂ ଖଣ୍ଡାଏତ ଭୂୟାଁ ଥାଏ କିନ୍ତୁ ସୁନ୍ଦରଗଡ଼ରେ ୪ ପ୍ରକାର ଯଥା— ପାହାଡ଼ ଭୂୟାଁ, ଖଣ୍ଡାଏତ ଭୂୟାଁ, ରାଜକୋଲୀ ଭୂୟାଁ ଓ ପୌଡ଼ୀ ଭୂୟାଁ ଦେଖାଯାଆନ୍ତି । ଏମାନଙ୍କ ମଧ୍ୟରୁ ପାହାଡ଼ିଆ ଭୂୟାଁମାନେ ନିଜର ବଂଶ ଗୁଣ ଅକ୍ଷୁର୍ଣ୍ଣ ରଖିଛନ୍ତି । ଏମାନଙ୍କର ନାୟକ, ଦେହେରି, ସାହା, ବେହେରା, ମାଝି, କାଲୋ ପ୍ରଭୃତି ବର୍ଗ ବା ସାଙ୍ଗିଆ ଦେଖାଯାଏ । କେନ୍ଦୁଝର, ବଣାଇ ଓ ପାଲ୍‌ଲହଡ଼ା ଭୂୟାଁମାନେ ସେହି ଅଞ୍ଚଳର ରାଜାମାନଙ୍କୁ ଅଭିଷେକ କରାଇବା କ୍ଷମତା ନିଜ ହସ୍ତରେ ରଖିଛନ୍ତି । ❋ ଭୂୟାଁମାନେ ଦ୍ରାବିଡ଼ ଜାତୀୟ ଏବଂ ସଭ୍ୟ ଓ ଉନ୍ନତ ଥିଲେ । ଖିଚିଂର ପ୍ରାଚୀନ କୀର୍ତ୍ତି ଏହି ଭୂୟାଁ ମାନଙ୍କର କାର୍ଯ୍ୟ ଥିବାର ଅନୁମାନ କରାଯାଏ ।

---

❋ ଓଡ଼ିଶା ଇତିହାସ— ହରେକୃଷ୍ଣ ମହତାବ ।

❋ ସମ୍ବଲପୁର ଇତିହାସ-— ଶିବପ୍ରସାଦ ଦାଶ

କେନ୍ଦୁଝରର ଭୂୟାଁ ମେଳ (ଖ୍ରୀ. ୧୮୯୦-୧୮୯୩) ଓଡ଼ିଶା ଇତିହାସରେ ପ୍ରସିଦ୍ଧ ଘଟଣା । ସ୍ୱର୍ଗତ ଗୋପାଳବଲ୍ଲଭ ଦାସ ଖ୍ରିମ ଭୂୟାଁ ପୁସ୍ତକ ରଚନା କରି ଏମାନଙ୍କର ସାହସିକତା ପ୍ରଦର୍ଶନ କରିଛନ୍ତି । ଭୂୟାଁ-ମାନେ ମୟୂର ଅଣ୍ଡାର ଧଳା ଅଂଶରୁ ଜନ୍ମ ନେଇଛନ୍ତି ଏବଂ ଭଞ୍ଜ ବଂଶ ମୟୂର ଅଣ୍ଡାର କେଶରରୁ ଜନ୍ମ ନେଇଛନ୍ତି ବୋଲି ବିଶ୍ୱାସ । Dr. N. K. Sahu, Dr. P. K. Mishra and Dr. J. K. Sahu ତାଙ୍କର History of Orissa ରେ ଭଞ୍ଜବଂଶର ଜନ୍ମବୃତ୍ତାନ୍ତ ଲେଖିଛନ୍ତି—The totemic origin indicates that the Bhanjas originaly belonged to some aborigenal tribe. They may indentified with the Bhuyans who are an ancient tribe and were till recently enjoying great powers and previleges in the region which was at one time under the sway of Bhanjas. The Puran Bhuyans till to day believe that their progenitor was born from the white of a peohen's egg along with the progenitor of the Bhanjas who was born from its Yolk."

ଭୂୟାଁମାନେ ବ୍ୟବସାୟ ବାଣିଜ୍ୟରେ ଉନ୍ନତ ଥିଲେ । 'ମଝ୍‌ଝିମ' 'ନିକାୟ' ଓ 'ମହାବାଗ' ନାମକ ପାଲିଗ୍ରନ୍ଥରୁ ଜଣାଯାଏ ଯେ ତପସ୍ସୁ' ଓ 'ଭଲ୍ଲୁକ' ନାମକ ଦୁଇଜଣ 'ଉକ୍କାଲ' ( ଉତ୍କଳ ବାସୀ ) ବଣିକ 'ପୋଖ୍‌ଖରବଣ୍ଡ' ନଗରରୁ ରାଜଗୃହ ( ପାଟନା-ବିହାର ) ନିକଟକୁ ଯାଉଥିବା ବାଟରେ ଉରୁବେଲା ନିକଟସ୍ଥ ରାଜାୟତନ ମୂଳରେ ବୁଦ୍ଧ ଦେବଙ୍କ ସହିତ ସାକ୍ଷାତ କରି ତାଙ୍କୁ ଭୋଜନ ଅର୍ପଣ କରିଥିଲେ ଓ ତାଙ୍କର ଉପଦେଶ ଶୁଣିଥିଲେ । ଏହି ଦୁଇଜଣ ବଣିକ ଭୂୟାଁ ଜାତିର ଲୋକ । ❊

ଓଡ଼ିଶାର ଅନ୍ୟ ଅଞ୍ଚଳରେ ଭୂୟାଁ ପଦର ପ୍ରଚଳନ ଅଛି । ଚଷା, ଓଡ଼ ଶ୍ରେଣୀୟ ଲୋକ ଙ୍କର ଏପରି ପଦବୀ ଅଛି । ଏମାନେ ସମସ୍ତେ ସୈନିକ ଶ୍ରେଣୀଭୁକ୍ତ ହୋଇ ଯୁଦ୍ଧ କରୁଥିଲେ । ବାଲେଶ୍ୱର, କଟକ, ଅଞ୍ଚଳରେ ଭୂୟାଁ ପଦଧାରୀ ଲୋକଙ୍କ ସଂଖ୍ୟା ବେଶୀ । ଶାହାଜାହାନ ଓ ଆଉରଙ୍ଗଜେବ୍‌ଙ୍କ ରାଜତ୍ୱ ସମୟରେ ଭୂୟାଁ ମାନେ ମୁସଲମାନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିଥିଲେ । ❊ ବର୍ତ୍ତମାନ ଭୂୟାଁମାନଙ୍କ ମଧ୍ୟରେ କେତେକ ସଭ୍ୟତାର

❊ ଓଡ଼ିଶାର ଇତିହାସ— ହରେକୃଷ୍ଣ ମହତାବ ।
❊ ପ୍ରାଚୀନ ଉତ୍କଳ— ଜଗବନ୍ଧୁ ସିଂହ

ଉଚ୍ଚସ୍ତରରେ ଅଛନ୍ତି ଏବଂ ନିଜକୁ କ୍ଷେତ୍ରୀୟ ବା ରାଜପୁତ ବୋଲି ପରିଚୟ ଦିଅନ୍ତି । ଶରତ ଚନ୍ଦ୍ର ରାୟ ତାଙ୍କର The Hill Bhuyans ପୁସ୍ତକର Preface ରେ ଲେଖିଛନ୍ତି— "The Bhuyans are one of the few tribes wnose different branches represent various stages of cultural evolution from the more or less primitive culture of the Hill Bhuynas. ....to the thoroughly Hindhunised Zamidar families among the plainc. Bhuynas of Orissa and elsewhere, some of whom now put forward pretension to Rajput or Ksatriya descent."

ଓଡ଼ିଶାର ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ ସିଂହଭୂମ ଅଞ୍ଚଳରୁ "ଭୂୟାଁ ଜାତିର ମାଦଳା" ପୋଥି ପାଇଥିଲେ । ସେଥିରେ ଭୂୟାଁମାନେ ପଶ୍ଚିମରୁ ଆସିଥିବା ବର୍ଣ୍ଣାଯାଇଛି ।"

"ଶ୍ରୀଭୂଜବଂଶୀଙ୍କର ନିଜସ୍ଥାନ ଭୋପାଳ ରାଜ୍ୟ ପଶ୍ଚିମରେ । ଭୁବନର ନାରଙ୍ଗି ରାଜା ମହାଯଜ୍ଞ ଆରମ୍ଭ କଲେ । ବେଦବିଧି ପ୍ରମାଣେ ସବ ସମ୍ଭାର ତିଆରି ଯଜ୍ଞଘର ବନାଇଲେ । ବନ୍ଧୁମିତ୍ର କାଶ୍ୟପ ଆଦି ସମସ୍ତ ବିପ୍ର ଏମାନଙ୍କୁ ନିମନ୍ତ୍ରଣ କରି ଯଜ୍ଞ କରାଇଲେ । ବିପ୍ର ଦଶ ଘର ବନ୍ଧୁ ସାଢ଼େବାର ଘର, ବଂଶୀକ ଖେ(କ୍ଷ)ତ୍ରୀ ଅଠଘର, ବଇଶ (ବୈଶ୍ୟ) ଛ ଘର, ବନ୍ଧୁ ଅପରେ ଭୋଜ କ୍ଷେତ୍ରୀ କୋଡ଼ିଏ ଘର । ଏମାନଙ୍କୁ ବରଣ କରି ଅସ୍ତୁଟିରି ନିକଟକୁ ଅଣାଇଲେ ।"

ଏଠାରେ ବନ୍ଧୁ ସାଢ଼େବାର ଘର ଲେଖାଯାଇଛି ଏହି ଭୂୟାଁ ସାଢ଼େବାର ଘର ପ୍ରଥମେ ଆସିଥିଲେ । ଏମାନେ ୧-ନାରଙ୍ଗି, ୨-କାଟେଇଁ, ୩-ବାରଙ୍ଗି, ୪-ଏଙ୍ଗର, ୫-କାଣ୍ଡାଳ, ୬-ଶାଳେଣ୍ଡ, ୭-ବାଳମୁଣ୍ଡୀ, ୮-ଗୁମିଆଳ, ୯-ନୁଙ୍ଗୁରି, ୧୦-କାଳକ, ୧୧-ଅନ୍ଧ, ୧୨-କାଟିଆଳ । ନମ୍ବର ସଂଖ୍ୟା ଯେଉଁ ଭୂୟାଁ ତାଙ୍କୁ ସାତେଘର ବୋଲି ଜାଣିବ । ସାତେବାର ଘର ଯେତେ ଭୂୟାଁଙ୍କର ଶ୍ରେଷ୍ଠ ବୋଲି ଜାଣିବ । ସେ ପୋଥିରେ କତିଣୀ ଭୂୟାଁ ଶ୍ରେଣୀ ଲେଖାଯାଇଛି ।

ଗଳଡ଼ କରଣୀ ସାତଶହ ଭୂୟାଁ ପାଉଆ ବୋଲନ୍ତି । କରଣୀ ଭୂୟାଁ ଏକଶି କଛଡ଼ ବୋଲନ୍ତି ।ବାରଙ୍ଗି କରଣୀ ବାଉନ ଘର ଭୂୟାଁ ବଥୁଆ ବୋଲନ୍ତି । ନାରଙ୍ଗୀ କରଣୀବିଶାଶଏ ଘର ଭୂୟାଁ ଧରୁଆ ବୋଲନ୍ତି । ଏହିପରି କାତରାମିଆ ଖେରୁଆଳ, ବାଥଡ଼ି କରଣୀ ଭୂୟାଁ ମଧ୍ୟରେ ଅଛନ୍ତି । ଏହିପରି ବିଭିନ୍ନ ଶ୍ରେଣୀର ଭୂୟାଁ ଏହି ମାଦଳାରେ ଦର୍ଶାଯାଇଛି । ❋

## ଓରାଓଁ—

ଓରାଓଁମାନେ ରାଜଗାଙ୍ଗପୁର, ତଳସରା, ବଣ୍ଡା, ବିରମିତ୍ରପୁର ଏବଂ ସୁନ୍ଦର ଗଡ଼ ପୋଲିସ ଥାନା ଅଞ୍ଚଳରେ ଅଧିକାଂଶ ଦେଖାଯାନ୍ତି । ସମ୍ବଲପୁର,ବାମଣ୍ଡା ରେଢ଼ାଖୋଲ ଓ ପାଲଲହଡ଼ା ଅଞ୍ଚଳରେ ଏମାନେ କୋଡ଼ା ବା ଧାଙ୍ଗର କୋଡ଼ା ନାମରେ ପରିଚିତ । କୋଡ଼ ମାନଙ୍କର ମୁଖ୍ୟ ବ୍ୟକ୍ତିକୁ 'ମିଆଣ' କହନ୍ତି । ମିଆଣମାନେ ଗ୍ରାମର ବିଧବା ବିବାହ ଓ ବିବାହ ବିଚ୍ଛେଦ କେଶ ଗୁଡ଼ିକ ଫଇସଲା କରନ୍ତି । ସେମାନଙ୍କର ଧାର୍ମିକ ଓ ସାମାଜିକ ଉତ୍ସବ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରନ୍ତି । ଏମାନେ ବିହାର ଛୋଟ ନାଗପୁର ଅଞ୍ଚଳ ଏବଂ ସିଂହଭୂମ ଅଞ୍ଚଳରୁ ଆସି ପାହାଡ଼ ଜଙ୍ଗଲ ମଧ୍ୟରେ ବସବାସ କରି ରହିଛନ୍ତି । ଏମାନେ ଶ୍ରମିକ ଭାବେ ଆସିଥିଲେ, ଭୂମି ଅର୍ଜନ କରି ଚାଷ କରିବା ତାଙ୍କର ଇଚ୍ଛାଥିଲା ବୋଲି କବଡ଼େନ ରାମା ସେ★ ଦର୍ଶାଇଛନ୍ତି । କ୍ରମେ ସେମାନେ ଜମି ଅଧିକାର କରିବା ପାଇଁ ଆବଶ୍ୟକତା ଅନୁଭବ କଲେ ଏବଂ ବସବାସ କରି ରହିଲେ ।

## ମୁଣ୍ଡା—

ଏହି ଅଞ୍ଚଳର ମୁଣ୍ଡାମାନେ ପ୍ରାଚୀନ ଅଧିବାସୀ । ମୁଣ୍ଡାମାନେ ଓଡ଼ିଶାର ସମସ୍ତ ଜିଲ୍ଲାରେ ଅଛନ୍ତି କିନ୍ତୁ କେନ୍ଦୁଝର, ଢେଙ୍କାନାଳ ଓ ସୁନ୍ଦରଗଡ଼ ଜିଲ୍ଲାମାନଙ୍କରେ ସବୁଠାରୁ ବେଶୀ ଦେଖାଯାଆନ୍ତି । ଏମାନଙ୍କର ଆଦିବାସ ସ୍ଥଳ ବିନ୍ଧ୍ୟ ଓ ଆରାବଳୀ ପର୍ବତ ମଧ୍ୟ ଅଞ୍ଚଳରେ ଥିଲା । ଆର୍ଯ୍ୟମାନଙ୍କର ଆଗମନ ଫଳରେ ବହୁତ ପୁରା କାଳରୁ ଏମାନେ ଆସି ଏ ଅଞ୍ଚଳରେ

❋ ସିଂହଭୂମର ଭୂୟାଁ ଜାତି— ମାଦନା ଓ ସିଂହ ବଂଶ— ମାଦଳା— ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ— ଓଡ଼ିଆ ସାହିତ୍ୟ ଏକାଡ଼େମୀ

★ Feudatory states of orissa — L. C. B. cebden — Rsmsay (Orissa District Gazetters, Sundargarh)

ବସବାସ କରନ୍ତି । * ଗ୍ରିନ ତାଙ୍କର Natural History ରେ କହନ୍ତି ମଳୟ ଗିରି ଅଞ୍ଚଳରେ ମୁଣ୍ଡାମାନେ ଖ୍ରୀଷ୍ଟୀୟ ପ୍ରଥମ ଶତକ ବେଳକୁ ବସବାସ କରୁଥିଲେ । ଏମାନଙ୍କର ଧାର୍ମିକ ଓ ସାମାଜିକ ଚଳନ ପାଇଁ ଏମାନେ ପ୍ରତି ଗ୍ରାମରେ ଜଣେ 'ପାହାନ' ବାଛିଥାନ୍ତି । ପାହାନ ଗ୍ରାମର ସମସ୍ତଙ୍କ ପାଇଁ ଦୁଷ୍ଟ ଗ୍ରହ, ଭୂତ, ପ୍ରେତମାନଙ୍କୁ ସନ୍ତୁଷ୍ଟ କରି ଜଙ୍ଗଲର ହିଂସ୍ର ଜନ୍ତୁମାନଙ୍କ ଦାଉରୁ ରକ୍ଷା କରିବା ଏବଂ ଭଲ ଧାନ ଅମଳ ପାଇଁ ପୂଜା କରନ୍ତି । ଗ୍ରାମର ଭଲ ମନ୍ଦ ବିଚାର କରି ଦୋଷୀକୁ ଦଣ୍ଡ ଦିଅନ୍ତି । ଆଠ ବା ଦଶଟି ଗ୍ରାମକୁ ନେଇ ଗୋଟିଏ 'ପଡ଼ା' ଥାଏ । ପଡ଼ା ମଧ୍ୟରେ ମୁଖ୍ୟ ଲୋକକୁ ରାଜା, ଠାକୁର, ଲାଲ, ପାଣ୍ଡେ ନାମ ଦେଇଥାନ୍ତି । ସେ ଜାତି ଗତ ସମସ୍ତ ମାମଲା ଫଇସଲା କରନ୍ତି । ଏମାନେ ମହାଭାରତ ଯୁଦ୍ଧରେ କୌରବଙ୍କ ପକ୍ଷ ନେଇ ଯୁଦ୍ଧ କରିଥିବାର ଜଣାଯାଏ । କିମ୍ବଦନ୍ତୀ ଅନୁସାରେ ଏମାନେ ୨୧୦୦୦ ଥିଲେ ଏବଂ ଏମାନେ ୨୫ଟି ବିଭାଗରେ ବିଭକ୍ତ ହୋଇଥିଲେ ଏବଂ 'ଓଡ଼ିଆ' ବିଭାଗ ସେଥି ମଧ୍ୟରୁ ଗୋଟିଏ ଥିଲା ।

**ଖଡ଼ିଆ—**

ଖଡ଼ିଆ ବା ଖରିଆ ଶ୍ରେଣୀର ଲୋକମାନେ ଜରା ଶବର ବଂଶଧର ବୋଲି ପରିଚୟ ଦିଅନ୍ତି । ଏମାନେ ସମ୍ବଲପୁର, ସୁନ୍ଦରଗଡ଼, ଢେଙ୍କାନାଳ, ମୟୂରଭଞ୍ଜ, ମଧ୍ୟପ୍ରଦେଶ, ବିହାରର ଛୋଟନାଗପୁର ଅଞ୍ଚଳ, ସିଂହଭୂମି ଠାରୁ ଶିମିଳିପାଳ ମଧ୍ୟରେ ଦେଖାଯାନ୍ତି । ଏମାନେ ସୁନ୍ଦରଗଡ଼ ତଳସରା, ରାଜଗାଙ୍ଗପୁର, ବଣ୍ଡା, ରାଇବୋଗା, ଗୁରୁଣ୍ଡିଆ ଓ ବଣେଇ ଗଡ଼ ଥାନା ଅଞ୍ଚଳରେ ଅଧିକ ଦେଖାଯାନ୍ତି । ଏମାନେ ୩ ଶ୍ରେଣୀରେ ବିଭକ୍ତ— ଯଥା—ପାହାଡ଼ ଖଡ଼ିଆ, ଡେଲ୍‌କି ଖଡ଼ିଆ, ଦୁଧ ଖଡ଼ିଆ । ପାହାଡ଼ ଖଡ଼ିଆ-ମାନେ ସବୁ ପୁରାତନ ଏମାନେ ପାହାଡ଼ ଉପରେ ଘର କରି ରହିଥାନ୍ତି । ସାଧାରଣତଃ ଏମାନେ ମହୁ, ସିଲକନ ବା ଟସରଗୋଟି, ଲାଖ, ଝୁଣା ପ୍ରଭୃତି ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ କରି ଜୀବିକା ନିର୍ବାହ କରନ୍ତି । ଡେଲକି ଓ ଦୁଧ ଖଡ଼ିଆମାନେ କୃଷି କାର୍ଯ୍ୟ କରନ୍ତି । ଏମାନେ ଅନ୍ୟାନ୍ୟ ଜାତି ସଙ୍ଗେ ମିଶି ବସବାସ କରନ୍ତି । ଖଡ଼ିଆମାନେ ମୁରୁ (କଇଁଛ) ସୋରେନ (ପଥର) ସମଦ (ଭରଣି) ବରଲିଭା (ଏକ ପ୍ରକାର ଫଳ) ହଂସ (ଏକ

* ଓଡ଼ିଶାର ଆଦିବାସୀ ସଂସ୍କୃତି— ଶ୍ରୀ ବଂଶୀଧର ମହାନ୍ତି ।

ପକ୍ଷୀର ନାମ) ବଲୁଙ୍ଗ (ଲୁଣ) କେରକେଟା (ପକ୍ଷୀର ପର) ଟପନୋ (ଏକ ପ୍ରକାର ପକ୍ଷୀ) ପ୍ରଭୃତି ଶ୍ରେଣୀରେ ବିଭକ୍ତ ହୋଇଥାନ୍ତି । ଏମାନଙ୍କର ପୁରୋହିତ ଯଥା—ପାହାଡ଼ ଖଡ଼ିଆଙ୍କ 'ଦେହୁରୀ' ଢେଲକି ଖଡ଼ିଆ ମାନଙ୍କର 'କାଲୋ' ଏବଂ ଦୁଧ ଖଡ଼ିଆମାନଙ୍କର 'ପ୍ରଧାନ' ବଛା ହୋଇଥାନ୍ତି । ଏମାନେ ଜାତି ଗତ ସମସ୍ୟା ସମାଧାନ କରନ୍ତି ।

## କିଷାନ—

ଏହି ଅଞ୍ଚଳରେ କିଷାନ ଶ୍ରେଣୀର ଲୋକମାନେ କିଷାନ ଭାଷା (ଓଡ଼ିଆ ଓ ହିନ୍ଦି ମିଶା ଭାଷା) କହିଥାନ୍ତି । ଏମାନଙ୍କର ବୃତ୍ତି ହେଉଛି ପ୍ରଧାନ ଜୀବିକା । ଏମାନେ ଛୋଟନାଗପୁର, ମଧ୍ୟପ୍ରଦେଶ ଓ ସୁନ୍ଦରଗଡ଼ ଅଞ୍ଚଳରେ ଦେଖାଯାଆନ୍ତି । ଏମାନଙ୍କର ମୁଖ୍ୟ ବ୍ୟକ୍ତି ହେଉଛନ୍ତି 'ମୁଖିଆ' ଏବଂ ସେ ଜଣେ 'କଟୁଆଳ' ସାହାଯ୍ୟରେ ଜାତିଗତ ସମସ୍ୟା ସମାଧାନ କରନ୍ତି ।

ଏହି ଅଞ୍ଚଳରେ କନ୍ଧମାନେ ଦେଖାଯାନ୍ତି । ଏମାନେ ସାଧାରଣତ ବୌଦ-କନ୍ଧମାଳ ଅଞ୍ଚଳରୁ ଆସିଥାନ୍ତି । ଆଉ ଏକ ଜାତି ବଞ୍ଜିଆ । ଏମାନେ ବରମିତପୁର ଓ ବାଲିବୋଗା ଅଞ୍ଚଳରେ ଦେଖାଯାନ୍ତି । ଏମାନେ ହିନ୍ଦି ଓଡ଼ିଆ ମିଶା (ଜଶପୁରୀ ଭାଷା) କହିଥାନ୍ତି । ଏମାନେ ୭ ଭାଗରେ ବିଭକ୍ତ ଯଥା— ମଥା, ମାଝି, କାରଙ୍ଗା, ପାଥାନ, ବଡ଼େକ, ମିର୍ଦ୍ଧା ଓ ପରସଗଞ୍ଜା । ଅନ୍ୟ-ମାନଙ୍କ ମଧ୍ୟରେ କୋହ୍ଲ, ଭୂମିଜ, ପରଜା, ସାନ୍ତାଳ ପ୍ରଭୃତି ଭିନ୍ନ ଭିନ୍ନ ଜାତିର ଦେଖାଯାନ୍ତି ।

## କୁର୍ମୀ ଜାତି—

ପ୍ରାଚୀନ କାଳରେ କୁର୍ମୀ ନାମରେ ଏକ ଜାତି ଛୋଟ ନାଗପୁରର ରାଞ୍ଚି, ମଧ୍ୟପ୍ରଦେଶ,, ସମ୍ବଲପୁର ଓ ସୁନ୍ଦରଗଡ଼ ଅଞ୍ଚଳରେ ବାସ କରୁଥିଲେ । ଏମାନେ କୃଷିଜୀବି ଜାତି । କୃଷିକରି ଧନଶାଳୀ ହୋଇଥିଲେ । ସେମାନଙ୍କର ପୋତାଧନ ମାଟିତଳୁ ଏବେ ମଧ୍ୟ ମିଳୁଛି । ବଳଦରେ ମାଟି କୋରଡ଼*

* କୋରଡ଼— ଏକ ପ୍ରକାର ଯନ୍ତ୍ର, କାଠ ପଟାରେ ଦୁଇପଟେ ଦୁଇଟି ବହ୍ଲା ବା ବାଉଁଶ ଲଗାଇ ହଳ ବଳଦରେ ବନ୍ଧାଯାଇ ଜମି ସମତଳ କରାଯାଏ । ଏହା ସମ୍ବଲପୁର—ସୁନ୍ଦରଗଡ଼ ଅଞ୍ଚଳରେ କୃଷି କାର୍ଯ୍ୟରେ ବ୍ୟବହୃତ ହୁଏ ।

ସାହାଯ୍ୟରେ କୋରଡ଼ି ଗୋଲ୍‌କାର ପୁଷ୍କରଣୀ ଖନନ କରୁଥିଲେ । ବର୍ତ୍ତମାନ ଏହି ପ୍ରକାର ଜଳାଶୟକୁ 'କୁର୍ମୀବନ୍ଧ' କହନ୍ତ ।

କୁର୍ମୀମାନେ ବର୍ତ୍ତମାନ ବିଶ୍ରାଅଞ୍ଚଳରେ ବହୁଳଭବରେ ବାସ କରୁଛନ୍ତି । ସେମାନେ ଓଡ଼ିଆ ଏବଂ କୁରମାଳୀ ଭଷାରେ କଥାବାର୍ତ୍ତା କରନ୍ତି । ସେମାନେ ନିଜ ଜାତି ବ୍ୟତୀତ ଅନ୍ୟ ଜାତିରେ ବିବାହ କରନ୍ତି ନାହିଁ । ହିନ୍ଦୁମାନଙ୍କ ଦେବଦେବୀ ପୂଜା କରନ୍ତି । ବ୍ରାହ୍ମଣମାନେ ସେମାନଙ୍କର ସାମାଜିକ ଧର୍ମକର୍ମ କରିଥାନ୍ତି । ଏମାନେ ଭିକ୍ଷାବୃତ୍ତିକୁ ଘୃଣା କରନ୍ତି ଅର୍ଥାତ୍ ଏହି ଜାତିରେ କେହି ଭିକାରି ନାହାନ୍ତି । ଏମାନେ ସରଳ ଏବଂ ପରିଶ୍ରମୀ ଜାତି ।

କନ୍ଧମାନେ କହନ୍ତି ସେମାନେ ସମ୍ବଲପୁର ଅଞ୍ଚଳକୁ ଆସିଲା ପରେ ଦୁର୍ବଳତର କୁର୍ମୀମାନଙ୍କୁ ଏଠାରେ ତଡ଼ି ଦେଇଥିଲେ ଏବଂ ସେମାନେ କେନ୍ଦୁଝର, ମୟୂରଭଞ୍ଜ ଦଶପଲ୍ଲା ଅଞ୍ଚଳକୁ ପଳାଇଗଲେ । ',କୁର୍ମୀମାନେ ବିନାଯୁଦ୍ଧରେ ଜମିମାନ ଛାଡ଼ିଦେଇ ଆକାଶରେ ଉଡ଼ିଗଲେ । * କୁର୍ମୀ ମାନେ ଭୂୟାଁମାନଙ୍କ ପରି ମୟୂରକୁ ଗୋତ୍ର ଚିହ୍ନରୂପେ ଗ୍ରହଣକରିଛନ୍ତି । ଶ୍ରୀନାଥ ଦତ୍ତଙ୍କ ମୟୂରଭଞ୍ଜ ସେଟଲମେଣ୍ଟ ରିପୋର୍ଟ ଅନୁସାରେ ଭୂୟାଁ ଓ କୁର୍ମୀମାନେ ଏକ ସମୟରେ ମୟୂରଭଞ୍ଜ ଅଞ୍ଚଳରେ ଶାସକ ଜାତି ଥିଲେ । ପ୍ରାଚୀନ କାଳରେ ଏମାନେ ବେଦବ୍ୟାସ ଅଞ୍ଚଳର ଏକ ସ୍ଥାୟୀ ବାସିନ୍ଦା ଥିଲେ ।

**କୋହ୍ଲ ଜାତି--**

କୋହ୍ଲ, ମୁଣ୍ଡା, ସାନ୍ତାଳ ଓ ଓରାଓଁ ଆଦି ଏହି ଶ୍ରେଣୀ ଅନ୍ତର୍ଗତ । ଏମାନେ ଦ୍ରାବିଡ଼ ଶବରଙ୍କ ଅପେକ୍ଷା ଅନୁନ୍ନତ । ବର୍ତ୍ତମାନ ଆଧୁନିକ ସମଗ୍ର

* ସମ୍ବଲପୁର ଇତିହାସ— ଶିବ ପ୍ରସାଦ ଦାଶ

ସୁନ୍ଦରଗଡ଼ ଜିଲ୍ଲାରେ ଖ୍ରୀଷ୍ଟାବ୍ଦ ୧୯୭୧ ଜନଗଣନା ଅନୁସାରେ ଏମାନଙ୍କ ସଂଖ୍ୟା ମାତ୍ର ୪୦୯୯ । ଏମାନେ ବନଜାତ ଦ୍ରବ୍ୟ ସଂଗ୍ରହକରି ଏବଂ ମଜୁରି କରି ସାଧାରଣତଃ ବଞ୍ଚନ୍ତି ।

ପ୍ରାଚୀନ କାଳରେ ଦ୍ରାବିଡ଼ ଓ କୋହ୍ଲ ଅଧିବାସୀମାନେ ଦଳ ଦଳ ହୋଇ ଜଣେ ନାୟକ ବା ପ୍ରଧାନଙ୍କ ଅଧୀନରେ ବସବାସ କରୁଥିଲେ । ଦଳପତି ଦଳଦ୍ୱାରା ନିର୍ବାଚିତ ହେଉଥିଲେ ଏବଂ ଦଳ ଉପରେ ସମସ୍ତ କ୍ଷମତା ପ୍ରୟୋଗ କରୁଥିଲେ । ସେମାନେ ଅରଣ୍ୟ ପରିଷ୍କାର କରି କୃଷିଭୂମି ପ୍ରସ୍ତୁତ କରୁଥିଲେ । କୃଷି, ମୃଗୟା, ବନ୍ୟଜାତ ଦ୍ରବ୍ୟ ସଂଗ୍ରହ କରି ଜୀବିକା ନିର୍ବାହ କରନ୍ତି ।



# ନବମ ପରିଚ୍ଛେଦ

## ବେଦବ୍ୟାସର ପୁରାଣ ଯୁଗୀୟ ଇତିହାସ

ଓଡ଼ିଶା ପ୍ରାଚୀନ କାଳରେ ଓଡ୍ର, ଉତ୍କଳ ଓ କଳିଙ୍ଗ ଏହି ତିନୋଟି ନାମରେ ପରିଚିତ ଥିଲା । ଏହି ବେଦବ୍ୟାସ ଭୂଖଣ୍ଡ ବିଭାଗ ସମୟରେ ଓଡ୍ର ବା ଔଡ୍ର, ଉତ୍କଳ, କଳିଙ୍ଗ ଓ ପରବର୍ତ୍ତୀ କାଳରେ କୋଶଳ ଓ ମହାକୋଶଳର ସୀମା ମଧ୍ୟରେ ଅବସ୍ଥିତ ରହିଲା । ଐତିହାସିକ ୭ ଡକ୍ଟର ହରେକୃଷ୍ଣ ମହତାବଙ୍କ ମତରେ ବହୁ ପୁରାତନ କାଳରେ ଏହା ଶବର-ମାନଙ୍କର ଅଧ୍ୟୁଷିତ ଭୂମି ଥିଲା । ଏହି ଅଞ୍ଚଳରେ ଦକ୍ଷିଣ ଭାରତର ଦ୍ରାବିଡ଼-ମାନେ ସେମାନଙ୍କର ଦ୍ରାବିଡ଼ ସଭ୍ୟତା ବିସ୍ତାର କଲେ ଏବଂ ଉତ୍ତର ଭାରତର ଆର୍ଯ୍ୟମାନେ ଆସି ସେମାନଙ୍କର ଆର୍ଯ୍ୟ ସଭ୍ୟତା ବିସ୍ତାର କଲେ । ଦକ୍ଷିଣ ଓ ଉତ୍ତର ଭାରତର ଏହି ମିଳନ ଭୂମିରେ ଶବର ସଭ୍ୟତା, ଦ୍ରାବିଡ଼ ସଭ୍ୟତା ଓ ଆର୍ଯ୍ୟସଭ୍ୟତାର ସମ୍ମିଳନରେ ଏକ ନୂତନ ସଭ୍ୟତା ସୃଷ୍ଟି ହୋଇଥିଲା । ଏହାହିଁ ବର୍ତ୍ତମାନର ଭାରତୀୟ ସଭ୍ୟତା । ସେ ଦର୍ଶାଇଛନ୍ତି, ଦ୍ରାବିଡ଼ ଭାଷାରେ "ଓକ୍‌କଲ" ଓ "ଓଡ଼ସୁ" ଶବ୍ଦର ଅର୍ଥ 'ଚଷା' । କାନ୍ନାଡ଼ ଭାଷାରେ ଚଷାକୁ 'ଓକ୍‌କଲ ଗାର' ଏବଂ ତେଲୁଗୁ ଭାଷାରେ ମୂଲିଆ କାମ କରୁଥିବା ଲୋକଙ୍କୁ "ଓଡ଼ସୁ" କହନ୍ତି । ଏହି 'ଓକ୍‌କଲ' ଓ 'ଓଡ଼ସୁ' ଶବ୍ଦରୁ ଆର୍ଯ୍ୟମାନେ ସଂସ୍କୃତ ଭାଷାରେ 'ଉତ୍କଳ' ଓ 'ଓଡ୍ର' ଶବ୍ଦ ବାହାର କଲେ । ଓଡ଼େସ ଜାତିର ନାମାନୁସାରେ ଏହି ଉତ୍କଳ ପ୍ରଦେଶ ବହୁ ପ୍ରାଚୀନ କାଳରୁ ଓଡ଼ିଶା ନାମରେ ଅଭିହିତ ହେଉଥିବାର ତିବ୍ବତର ଇତିହାସରୁ ପ୍ରମାଣ ମିଳୁଛି । * ତିବ୍ବତର ଇତିହାସରେ ଏହା 'ଓଟିଶା' ନାମରେ ଅବହିତ ।

---

* ଓଡ଼ିଶାର ରାଜନୈତିକ ଇତିହାସ—ଶ୍ରୀ ବଳରାମ ମହାନ୍ତି ।

ଓଡ଼ିଆ ଭାଷୀ ଅଞ୍ଚଳର ସୀମା ବିଷୟରେ ବିଶିଷ୍ଟ ଭାରତୀୟ ଭାଷା ତତ୍ତ୍ୱବିତ୍ ଅରସନ୍‌ଙ୍କ ମତ ହେଲା ପୂର୍ବ ସୀମା ବଙ୍ଗୋପସାଗର, ଉତ୍ତରରେ ପୂର୍ବ ଆଡ଼କୁ ହଳଦୀ ନଦୀ, ମେଦିନୀପୁର ସବ୍‌ଡ଼ିଭିଜନର କଣ୍ଠାଇ ଉତ୍ତର ସୀମା, ଉତ୍ତର-ପଶ୍ଚିମ ଆଡ଼କୁ କାଳିଜାଈ ନଦୀ ଠାରୁ ବାଙ୍କୁଡ଼ା ପର୍ଯ୍ୟନ୍ତ, ଦାନ୍ତନ୍, ଗୋପୀବଲ୍ଲଭପୁର, ଝାଡ଼ ଗ୍ରାମ ଓ ବିନପୁର ଥାନା ମାନ ଏହାର ଅନ୍ତର୍ଭୁକ୍ତ । ସିଂହ ଭୂମିର ସାଧାରଣ ସୀମା ମୟୂର ଭଞ୍ଜ, ଷଢ଼େଇ କଳା ପର୍ଯ୍ୟନ୍ତ; ରାଞ୍ଚି ଜିଲ୍ଲାର ଦକ୍ଷିଣ ସୀମା ପର୍ଯ୍ୟନ୍ତ; ପୁଣି ଦକ୍ଷିଣକୁ ଯାସପୁର ଓ ଉଦୟପୁର ମଧ୍ୟ ଦେଇ ରାଇଗଡ଼, ସାରଙ୍ଗଗଡ଼, ସମ୍ବଲପୁର, ଜୟପୁର, ଭାଇଜାଗ୍‌ପଟ୍ଟମ୍, ବସ୍ତର ପର୍ଯ୍ୟନ୍ତ; ଏଠାରୁ ପୂର୍ବ ଆଡକୁ ଭାଇଜାଗ୍ ପଟ୍ଟମ; ପୂର୍ବ ଉପକୂଳ ବରୁଭା ବନ୍ଦର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ❋

ସମ୍ରାଟ ଅଶୋକ ରାଜ୍ୟାଭିଷେକର ଅଷ୍ଟମ ବର୍ଷରେ (ଖ୍ରୀ.ପୂ. ୨୬୨) କଳିଙ୍ଗ ଉପରେ ଆକ୍ରମଣ କରିଥିଲେ । କଳିଙ୍ଗ ଜୟ କଲାପରେ ତୋଷାଳୀ (ଧଉଳି) ଓ ସମାପା (ଜଉଗଡ଼) ଅନୁଶାସନ 'ଓଡ୍ର ମାଗଧି' ଭାଷାରେ ଖୋଦିତ କରାଇଥିଲେ । ଡଃ ବେଣୀ ମାଧବ ପାଢ଼ୀ ତାଙ୍କର ଉଦ୍ରଜା---ପ୍ରାକୃତ ପୁସ୍ତକରେ ଖାରବେଳଙ୍କର ହାତୀ ଗୁମ୍ଫା ଶିଳା ଲେଖାର ଭାଷାକୁ ବିଚାରକୁ ନେଇ ଦର୍ଶାଇଛନ୍ତି କଳିଙ୍ଗ ଯୁଦ୍ଧ ପୂର୍ବରୁ ଯେଉଁ ଭାଷା 'ଓଡ୍ର-ମାଗଧୀ' ଭାବେ ଉଦ୍ର କଳିଙ୍ଗରେ ପ୍ରଚଳିତ ଥିଲା ଯୁଦ୍ଧ ଶେଷରେ ତାହା ସେଥିରୁ ବିଚ୍ଛିନ୍ନ ହୋଇ 'ଓଡ୍ର-କଳିଙ୍ଗ' ରୂପରେ ଆତ୍ମ ପ୍ରକାଶ କଲା । ଏହା ମାଗଧୀ ଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲା । ସର୍ବୋତୋଭାବେ ମାଗଧୀକୁ ପରିତ୍ୟାଗ କରିବା ଯୋଗୁଁ ଯେଉଁ କେତେକ ଶାବ୍ଦିକ ଅଭାବ ପରିଲକ୍ଷିତ ହେଲା, ତାର କ୍ଷତି ପୂରଣ ସକାଶେ ସଂସ୍କୃତ ତଥା ଅନ୍ୟ ପ୍ରାକୃତ ଅର୍ଥାତ୍ ଶୌରସେନୀ ପ୍ରଭୃତିର ଆଶ୍ରୟ ନିଆଗଲା । ଦେଶ୍ୟ କାଳିଙ୍ଗୀ ପଦ ସହିତ ଉକ୍ତ ଭାଷାର ମିଶ୍ରଣ ଘଟାଇ ଆଞ୍ଚଳିକ ଶବର ଭାଷାକୁ ସେଥି ସହିତ ସମ୍ମିଳିତ କରାଗଲା । ଫଳରେ ଶର୍କରା ଜଳ ସହିତ ନାରିକେଳ, କଦଳୀ, କର୍ପୂରାଦିର ମିଶ୍ରଣରେ ପାନକ ପ୍ରସ୍ତୁତ ହେଲାପରି 'ଓଡ୍ରୀ' ଭାଷା ସୃଷ୍ଟି ହୋଇ ପଡ଼ିଲା । ଅର୍ଥାତ୍ ଶୌରସେନୀ ଦେଶୀ ପ୍ରଭୃତି ଶବ୍ଦ ସହିତ ସ୍ଥାନୀୟ ଶବର ଗୋଷ୍ଠୀର ଶବ୍ଦାବଳୀ ମିଶି 'ଓଡ୍ରୀ' ନାମରେ ଏକ ସ୍ୱତନ୍ତ୍ର ଭାଷା ପ୍ରତିଷ୍ଠା ଲାଭକଲା । ଏଣୁ ପ୍ରାକୃତ ସର୍ବ ସ୍ୱୀକାର

❋ ଓଡିଆ ଭାଷାର ଇତିହାସ—ପଣ୍ଡିତ ବିନାୟକ ମିଶ୍ର ।

ମାର୍କଣ୍ଡେୟ ଏହାର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ ଲେଖିଛନ୍ତି-'ଶାବର୍ଯ୍ୟାମେ ବୌଡ୍ରୀ ଯୋଗଉତ୍କଳେଶ୍ୟ ଶୌରସେନ୍ୟାତଦେଃ' (ପ୍ରାକୃତ ସର୍ବସ୍ୱ-ମାର୍କଣ୍ଡେୟ-୧୫-୯) ଏହାହିଁ ନାଟ୍ୟ ଶାସ୍ତ୍ରୋକ୍ତ 'ଓଡ୍ରଜା' ବିଭାଷାର ରୂପାନ୍ତର, ଯାହାକି ଓଡ୍ର-କଳିଙ୍ଗର ଲୋକ ଭାଷା । ତେଣୁ କଳିଙ୍ଗାଧିପତି ଖାରବେଳ ସେହି ଭାଷାରେ ହିଁ ତାଙ୍କର ଜୀବନ ବାର୍ତ୍ତା ହାତୀ ଗୁମ୍ଫାର ବିରାଟ ଶିଳାଲେଖ ଦେହରେ ଉତ୍କୀର୍ଣ୍ଣ କରି ଯାଇଛନ୍ତି ।

ଏହି ବେଦବ୍ୟାସ ଭୂଖଣ୍ଡରେ ଅନାର୍ଯ୍ୟ ବାଳିକା ମତ୍ସ୍ୟଗନ୍ଧା ଓ ଆର୍ଯ୍ୟ ମୁନି ପରାଶରଙ୍କ ଠାରୁ 'ବେଦବ୍ୟାସ' ଜନ୍ମ ନେଲା ପରି ଓଡ଼ିଆ ଭାଷା ଓଡ୍ରୀ ବିଭାଷାରେ ଶାବରୀ ଭାଷାର ମିଳନରୁ ସୃଷ୍ଟି ହୋଇଛି । ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ରରେ ସେ ସମୟରେ ଅବସ୍ଥିତ ଦେଶ ମାନଙ୍କର ସୂଚନା ମିଳେ ।

"ଅଙ୍ଗାବଙ୍ଗା ଉତ୍କଳିଙ୍ଗା ବତ୍ସାଶ୍ଚୈ ବୋଡ୍ର ମାଗଧାଃ ।
ପୌଣ୍ଡ୍ରା ନେପାଳକାଶ୍ଚୈବ ଅନ୍ତର୍ଗିରି-ବହିର୍ଗିରାଃ ।
ତଥା ପ୍ଲବଙ୍ଗ ମାହେନ୍ଦ୍ର ମଳ ଦାମଳ ବର୍ତ୍ତିକାଃ ।
ବ୍ରହ୍ମୋତ୍ତର ପ୍ରଭୃତୟୋ ଭାର୍ଗବା ମାର୍ଗ-ବାସ୍ତଥା ।
ପ୍ରାକ୍-ଜ୍ୟୋତିଷାଃ ପୁଳନ୍ଦାଶ୍ଚ ବୈଦେହାସ୍ତାମ୍ରଲିପ୍ତକାଃ ।
ପ୍ରାଙ୍ଗ ପ୍ରଭୃତୟଶ୍ଚୈବ ଯୁଜ୍ୟନ୍ତେ ଚୌଡ୍ର-ମାଗଧୀମ୍ ।
ଅନ୍ୟେଽପି ଦେଶାଃ ପ୍ରାଚ୍ୟା ଯେ ପୁରାଣେ ସଂପ୍ରକୀର୍ତ୍ତିତାଃ ।
ତେଷୁ ପ୍ରଯୁଜ୍ୟତେ ଭୂଷା ପ୍ରବୃତ୍ତି ଶ୍ଚୌଡ୍ର-ମାଗଧୀ ॥"

(ନାଟ୍ୟ ଶାସ୍ତ୍ର)

ଅର୍ଥାତ୍—ଅଙ୍ଗ, ବଙ୍ଗ, ଉତ୍କଳିଙ୍ଗ, ବତ୍ସ ପୌଣ୍ଡ୍ର, ନେପାଳକ, ଅନ୍ତର୍ଗିରି, ବହିର୍ଗିରି, ପ୍ଲବଙ୍ଗ, ମାହେନ୍ଦ୍ର, ମଳଦ, ଆମଳ, ବର୍ତ୍ତିକ, ବ୍ରହ୍ମୋତ୍ତର, ଭାର୍ଗବ, ମାର୍ଗବ, ପ୍ରାଗ୍‌ଜ୍ୟୋତିଷ, ପୁଳନ୍ଦ, ବୈଦେହ, ତାମ୍ରଲିପ୍ତକ, ପ୍ରାଙ୍ଗ, ଔଡ୍ର, ମାଗଧୀ, ପ୍ରଭୃତି ଭାଷାରୁ ତତ୍କାଳୀନ ଦେଶର ଆତ୍ମସତ୍ତା ବିଷୟରେ ସୂଚନା ମିଳେ ।

ଭରତ ମୁନିଙ୍କ ସମୟରେ ଭାରତ ମଧ୍ୟରେ ଓଡ୍ର ଏକ ପ୍ରସିଦ୍ଧ ଦେଶ ରୂପେ ପ୍ରସିଦ୍ଧି ଲାଭ କରିଥିଲା । ଡଃ ପାଢ଼ୀ 'ଓଡ୍ର' ନାମଟି 'କଳିଙ୍ଗ' ଠାରୁ ଅଧିକ ପ୍ରାଚୀନତର ବୋଲି ଦର୍ଶାଇଛନ୍ତି । 'କଳିଙ୍ଗ' ଖ୍ରୀ. ପୂ. ୩୦୦ ବର୍ଷ

ପୂର୍ବେ ଖ୍ୟାତି ଲାଭ କଲାବେଳେ 'ଓଡ୍ର' ଖ୍ରୀ. ପୂ. ୪୦୦ କମ୍ବା ଆହୁରି ପୂର୍ବରୁ ପ୍ରସିଦ୍ଧି ଲାଭ କରିଥିଲା । ସେଥିପାଇଁ ଶ୍ରୀଯୁକ୍ତ ମନମୋହନ ଘୋଷ 'ନାଟ୍ୟ ଶାସ୍ତ୍ର' ଭୂମିକାରେ ଲେଖିଛନ୍ତି—It is most certain that the name odra was older and enjoyed a greater prestige and for this reason shared the honour with Magadha in giving a name to the eastern style of procedure (prabrithi) which was called 'Odra-Magadhi.

ବୈଦିକ ସାହିତ୍ୟ ଅର୍ଥାତ୍ ବେଦରେ କୌଣସି ଠାରେ କଳିଙ୍ଗ, ଓଡ୍ର ବା ଉତ୍କଳର ନାମ ମିଳେ ନାହିଁ । ଐତରେୟ ବ୍ରାହ୍ମଣରେ କଳିଙ୍ଗ ନାମ ଦେଖାଯାଏ । ଅଥର୍ବ ବେଦର ପୈପଳାଦ ଶାଖା ବ୍ରାହ୍ମଣମାନେ କେବଳ ଓଡ଼ିଶାରେ ଦେଖାଯାଆନ୍ତି । ବୈଦିକ ସାହିତ୍ୟ ପରେ, 'ବ୍ରାହ୍ମଣ ସାହିତ୍ୟର' ଯୁଗ (ଖ୍ରୀ. ପୂ: ତିନ ହଜାରରୁ ଦୁଇ ହଜାର) ବର୍ଷ ମଧ୍ୟରେ ଆରମ୍ଭ ହେଲା । ସେଥିରେ ମଧ୍ୟ ଏହି ଅଞ୍ଚଳର ନାମ ସଠିକ୍ ରୂପେ ମିଳେ ନାହିଁ । ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ବେଦ ଭାଷ୍ୟକାର ସାୟଣାଚାର୍ଯ୍ୟ (ଖ୍ରୀ. ୧୩୦୦-ଖ୍ରୀ. ୧୩୮୦) ଋଗ୍ ବେଦ ଓ ଅଥର୍ବବେଦ ବର୍ଣ୍ଣିତ ଦାରୁବ୍ରହ୍ମଙ୍କୁ ପୁରୁଷୋତ୍ତମ ରୂପେ ଅଭିହିତ କରିଛନ୍ତି । (ଅଦୋ ଯଦ୍ ଦାରୁଃ ପ୍ଲବତେ ସିନ୍ଧୋପାରେ ଅପୌରୁଷମ୍ । ତଦାରଭସ୍ୱ ଦୁର୍ଦଶେ ତେନ ଗଛ ପରସ୍ତରମ୍" ।

(ଋଗ୍‌ବେଦ—୧୦-୧୫୫-୩)

(ଅଥର୍ବ ବେଦ—୭-୮-୭)

ବୈଦିକ ଯୁଗରେ ବର୍ତ୍ତମାନ ଯେପରି ବୃହତ୍ତ ନଗର ନିର୍ମାଣ କଳାକୁ ଗୌରବ ଓ ଗୁରୁତ୍ତ୍ୱ ଦିଆଯାଉଛି ସେତେବେଳେ ସେପରି ଗୁରୁତ୍ୱ ଦିଆଯାଉନଥିଲା ବରଂ ଭାରତୀୟ ସଂସ୍କୃତିରେ ଦିବ୍ୟଭାବପୂର୍ଣ୍ଣ ତପୋବନ ଗୁଡ଼ିକୁ ଗୌରବ ଗାରିମା ଦିଆଯାଉଥିଲା । ସେତେବେଳେ କେଉଁ ଋଷି ଦଣ୍ଡକାରଣ୍ୟରେ ଆଶ୍ରମ କରୁଥିଲେ ତ କେଉଁ ଋଷି ବୃହଦାରଣ୍ୟରେ ନିବାସ କରୁଥିଲେ । * ସେହି ସମୟରେ ନଗର ଥିଲା ସତ, କିନ୍ତୁ ନଗର ଅପେକ୍ଷା ଅରଣ୍ୟ, ନଦୀ, ସାଗର ଓ ପର୍ବତର ନାମାନୁସାରେ ସେହି ଅଞ୍ଚଳ ନାମିତ ହେଉଥିଲା । ସେଥିପାଇଁ ସିନ୍ଧୁପାରେ

* ଆର୍ଯ୍ୟ ସଂସ୍କୃତିର ମୂଳ ତତ୍ତ୍ୱ— ସତ୍ୟବ୍ରତ ସିଦ୍ଧାନ୍ତାଳଂକାର ଅନୁବାଦ ପ୍ରିୟବ୍ରତ ଦାସ

ଏହି ଶ୍ରୀଜଗନ୍ନାଥଙ୍କ ଅପୌରୁଷେୟ ଦାରୁବ୍ରହ୍ମ ବିଦ୍ୟମାନ । ସମ୍ଭବତଃ ସେତେବେଳେ ବିନ୍ଧ୍ୟ ପର୍ବତ ଠାରୁ ଓଡ଼ିଶାର ଉତ୍ତର-ପଶ୍ଚିମାଞ୍ଚଳ ଏବଂ ମଧ୍ୟପ୍ରଦେଶର ଦକ୍ଷିଣ ପଶ୍ଚିମାଞ୍ଚଳକୁ ଦଣ୍ଡକାରଣ୍ୟ କହୁଥିଲେ ।

ଆର୍ଯ୍ୟମାନେ ପାଞ୍ଚଟି ଗୋଷ୍ଠୀ ବା ଜନରେ ବିଭକ୍ତ ହୋଇ ସପ୍ତସିନ୍ଧୁ ଅଞ୍ଚଳ (ସାତଟି ନଦୀ ପରିବେଷ୍ଟିତ ଅଞ୍ଚଳ) ରେ ବସବାସ କରୁଥିଲେ । ସେମାନେ ସେହି ସପ୍ତସିନ୍ଧୁ ଅଞ୍ଚଳ ଅର୍ଥାତ୍ ୧-ସିନ୍ଧୁ, ୨-ଶତଦ୍ରୁ, (ଆଧୁନିକ ସତ୍‌ଲେଜ) ୩-ପରୁଷ୍ଣୀ ( ରାଭି ବା ଇରାବତୀ ) ୪-ଅସିକ୍ନୀ ( ଚେନାବ୍ ) ୫-ଆର୍ଯ୍ୟକ୍ରୀୟା (ବିପାଶା ବ୍ୟାସ) ୬-ବିତସ୍ତା (ଝେଲମ୍) ୭-ସରସ୍ୱତୀ ନଦୀର ଅବବାହିକା ଅଞ୍ଚଳ ବୁଝାଉଥିଲା । ଏହି ନଦୀ ମାନଙ୍କ ମଧ୍ୟରେ ସରସ୍ୱତୀ ନଦୀ ବିଶେଷ ଆକର୍ଷଣୀୟା ଥିଲା । ଏହି ନଦୀ କୂଳରେ ବିଶ୍ୱର ପ୍ରାଚୀନ ଓ ମହାନ୍ ଜନ ସାହିତ୍ୟ "ବେଦ"ର ବିଭିନ୍ନ ସୂକ୍ତ ରଚିତ ହୋଇଥିଲା । ସେତେବେଳେ ଭାରତ ବର୍ଷକୁ ଯେଉଁ କେତେକ ଭାଗରେ ବିଭକ୍ତ କରିଥିଲେ ଯଥା— ବ୍ରହ୍ମାବର୍ତ୍ତ, ମଧ୍ୟଦେଶ, ଦକ୍ଷିଣା ପଥ, ବ୍ରାତ୍ୟଦେଶ ବା ପୂର୍ବଦେଶ ପ୍ରଭୃତି ମଧ୍ୟରୁ ଏହି ବେଦବ୍ୟାସ ଭୂଖଣ୍ଡ ପୂର୍ବଦେଶ ମଧ୍ୟରେ ଅବସ୍ଥିତ ଥିଲା ।

## ମହାଭାରତ ଓ ପୁରାଣଯୁଗ—

ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ପୁରାଣ ମାନଙ୍କରେ କଳିଙ୍ଗ ଉତ୍କଳ ଓ ଉଡ୍ରଦେଶ ସମ୍ବନ୍ଧରେ ବିବରଣୀ ରହିଛି । କଳିଙ୍ଗ ରାଜଧାନୀ ରାଜପୁରରେ କଳିଙ୍ଗରାଜ ଚିତ୍ରାଙ୍ଗଦଙ୍କ କନ୍ୟା ସ୍ୱୟମ୍ବର ସଭାରେ କର୍ଣ୍ଣ ଦୁର୍ଯ୍ୟୋଧନ ଶିଶୁପାଳ ଓ ଜରାସନ୍ଧ ଉପସ୍ଥିତ ଥିଲେ ଏବଂ ଦୁର୍ଯ୍ୟୋଧନ ରାଜକନ୍ୟାଙ୍କୁ ସେ ସଭାରୁ ବଳ ପୂର୍ବକ ନେଇ ଯାଇଥିଲେ । ଦୁର୍ଯ୍ୟୋଧନଙ୍କ ମିତ୍ର କର୍ଣ୍ଣ ଉତ୍କଳୀୟ ମାନଙ୍କୁ ଏକ ଯୁଦ୍ଧରେ ପରାସ୍ତ କରିଥିଲେ । କଳିଙ୍ଗ ରାଜ କୌରବଙ୍କ ପକ୍ଷ ଅବଲମ୍ବନ କରିଥିଲେ ହେଁ ଉଡ୍ର ଦେଶର ରାଜା ପାଣ୍ଡବ ମାନଙ୍କୁ ସମର୍ଥନ କରିଥିଲେ । ମନୁଙ୍କ ନାତି ଅର୍ଥାତ୍ ସୁଦ୍ୟୁମ୍ନଙ୍କ ପୁତ୍ର ଉତ୍କଳ ନାମକ ରାଜାଥିଲେ । ସେ ଯେଉଁ ଭୂଖଣ୍ଡ ଉପରେ ରାଜତ୍ୱ କରୁଥିଲେ ତାହାର ନାମ ଉତ୍କଳ । (ମତ୍ସ୍ୟପୁରାଣ) ମହାଭାରତରେ ଉଡ୍ର କଳିଙ୍ଗର ନାମ ମିଳେ ।

(କ) ପାଣ୍ଡ୍ୟାଂଶ୍ଚ ଦ୍ରାବିଡ଼ାଂଶ୍ଚୈବ ସଂହିତାଂଶ୍ଚୋଡ୍ର କେରଳୌ,
ଆନ୍ଧ୍ରାଂ ସ୍ତାଳବନାଂ ଶ୍ଚୈବ କଳଙ୍ଗାନୁଷ୍ଟ୍ରକର୍ଣ୍ଣିକାନ୍ ।
(ସଭାପର୍ବ ୩୧।୧୧)

(ଖ) ଉତ୍କଳା, ମେଖଳାଃ, ପୌଣ୍ଡ୍ରାଃ, କଳିଙ୍ଗାଶ୍ଚ ସଂଯୁଗେ
ନିଷାଦାଶ୍ଚ ନିଗର୍ତ୍ତାଶ୍ଚ ବାଲ୍ହିକାଶ୍ଚ ଜତାସ୍ତ୍ରପ୍ । (ଦ୍ରୋଣପର୍ବ)

ରାମାୟଣରେ କଳିଙ୍ଗ ଉତ୍କଳର ନାମ ଉଲ୍ଲିଖିତ ରହିଛି । ଭରତ ଅଯୋଧ୍ୟାରୁ ମାମୁଁ ଘରକୁ ଯିବାବାଟରେ କଳିଙ୍ଗ ନଗରରେ ଉପସ୍ଥିତ ହୋଇଥିଲେ । ଏଥିରୁ ଜଣାଯାଏ ସେତେବେଳେ ଗୋମତୀ ଓ ଅଯୋଧ୍ୟା ମଧ୍ୟରେ କଳିଙ୍ଗ ଅବସ୍ଥିତ ଥିଲା ।

ତତୋ ଗୋଦାବରୀ ନଦ୍ୟାଂ କୃଷ୍ଣାବେଣ୍ୟାଂ ମହାନଦୀଂ
ମେକଳାନୁତ୍କଳାଂ ଶୈବ ଦଶାର୍ଣ୍ଣନ ଗରାଣ୍ୟପି ।
ତଥା ମତ୍ସ୍ୟାଃ କଳିଙ୍ଗାଶ୍ଚ କୌଶିକାଶ୍ଚ ସମନ୍ତତଃ
ଖନ୍ଵୀକ୍ଷ୍ୟ ଦଣ୍ଡକାରଣ୍ୟଂ ସପର୍ବତ ନଦୀ ଗୁହାଂ । (କିଷ୍କିନ୍ଧ୍ୟା କାଣ୍ଡ)

ମହାକବି କାଳିଦାସଙ୍କ ବର୍ଣ୍ଣନା ଅନୁଯାୟୀ ମହାରାଜା ରଘୁ ତାଙ୍କ ଦିଗ୍‌ବିଜୟରେ ଉତ୍କଳ ପଥରେ କଳିଙ୍ଗକୁ ଯାଇଥିଲେ ଏବଂ ସେଠାରେ କଳିଙ୍ଗ ରାଜାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ ।

"ଉତ୍କଳ ଦର୍ଶିତ ପଥଃ କଳିଙ୍ଗାଭିମୁଖୋ ଯଯୌ
ଶିପ୍ରଂ ମହେନ୍ଦ୍ରନାଥସ୍ୟ ଜହାର ନତୁମେବଚମ୍"
(ରଘୁ ୪-୩୮-୪୩)

ରଘୁ ମହାରାଜ ଦିଗ୍ ବିଜୟରେ ଯାଇ କପିଶା ନଦୀ ପାର ହୋଇ ଉତ୍କଳ ଦର୍ଶିତ ପଥରେ କଳିଙ୍ଗକୁ ଗଲେ । ସେଠାରେ କଳିଙ୍ଗ ରାଜାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ଏଠାରେ କଂଶାଇ ନଦୀ ବା କାଂଶବାଂଶ ନଦୀ ହେଉଛି କପିଶା ନଦୀ । ଏହା ମେଦିନୀ ପୁରର ନିକଟ ଉପରକୁ ପ୍ରବାହିତ । କାଳିଦାସଙ୍କ ବର୍ଣ୍ଣନାରେ କଳିଙ୍ଗର ସୀମା କପିଶାଠାରୁ ଅମର କଣ୍ଟକ ଏବଂ ଦକ୍ଷିଣରେ ମହେନ୍ଦ୍ର ପର୍ବତ, ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କୂର୍ମ ପୁରାଣରୁ ଜଣାଯାଏ (୩୯-୯) କଳିଙ୍ଗାଧିପତିମାନେ ଅମର-କଣ୍ଟକ ନଗର ପର୍ଯ୍ୟନ୍ତ ଅନାର୍ଯ୍ୟ ଲୋକମାନଙ୍କ ଉପରେ ଆଧିପତ୍ୟ କରୁଥିଲେ । ବୈତରଣୀ ନଦୀ କଳିଙ୍ଗ ଦେଶରେ ପ୍ରବାହିତ ବୋଲି ମହାଭାରତରେ ଉଲ୍ଲେଖ ଅଛି ।

"ଏତେ କଳିଙ୍ଗାଃ କୌନ୍ତେୟ ଯତ୍ର ବୈତରଣୀ ନଦୀ ।
ଯତ୍ରାଯଜତ ଧର୍ମୋଽପି ଦେବାଞ୍ଛରଣ ମେତ୍ୟବୈ ॥"
(ମହାଭାରତ

କଳିଙ୍ଗ ଓ ମେକଳ ମଧ୍ୟରେ ଉତ୍କଳ ଅବସ୍ଥିତ ଥିଲା । କପିଶା ବା



ଚିତ୍ର ନଂ ୩ : ମାଣିକ ମୁଣ୍ଡାର ଗୁମ୍ଫା



ଚିତ୍ର ନଂ ୪ : ଶୁଖାବନ୍ଧର ଗଣେଶ



ଚିତ୍ର ନଂ ୫ : ଭଗ୍ନ ମନ୍ଦିର ଶୁଖାବନ୍ଧନର ଉତ୍କୀର୍ଣ୍ଣ



ଚିତ୍ର ନଂ ୬ : ଭଗ୍ନ ମନ୍ଦିରର ଦ୍ୱାର ବନ୍ଧନର ଲକ୍ଷ୍ମୀ

ଆଧୁନିକ କଂଶାଇ ନଦୀର ଦକ୍ଷିଣରେ ଉତ୍କଳ ଜାତି ବାସ କରୁଥିଲେ । ତେଣୁ ଉତ୍କଳ ଅଞ୍ଚଳ ବାଲେଶ୍ୱର ଠାରୁ ରାଞ୍ଚି ନିକଟବର୍ତ୍ତୀ ଲୁହରଡ୍ଡେଗା ଓ ମଧ୍ୟପ୍ରଦେଶର ସରଗୁଜା ମଧ୍ୟରେ ବ୍ୟାପ୍ତଥିଲା । ଦୁଇଜଣ ଉକ୍ କଳ (ଉତ୍କଳ) ବଣିକ ତ୍ରପସୁ ଓ ଭଲ୍ଲୁକ ରାଜଗୃହ ଯିବା ବାଟରେ ଉରୁବେଲାଠାରେ ବୁଦ୍ଧ ଦେବଙ୍କୁ ଭେଟି ତାଙ୍କୁ ଭୋଜନ ଅର୍ପଣ କରିଥିଲେ ଓ ତାଙ୍କଠାରୁ ଉପଦେଶ ଗ୍ରହଣ କରିଥିଲେ । ସେ ଦୁଇଜଣ ବୁଦ୍ଧଦେବଙ୍କର ପ୍ରଥମ ଶିଷ୍ୟ । 'ମଝିମ-ନିକାୟ' ଓ 'ମହାବଗ୍ଗ'ରେ ଏମାନଙ୍କୁ ଭୂୟାଁ । ଜାତିର ଲୋକବୋଲି କୁହାଯାଇଛି । ମହାବସ୍ତୁରେ ରାଜ୍ୟ ମାନଙ୍କ ତାଲିକାରେ ଉତ୍କଳ ଓ ବଭିନ୍ନ ଜାତି ସମ୍ପର୍କରେ ଉକ୍କଳ ବା ଔକ୍କଳ ଜାତିଙ୍କ ନାମ ଅଛି । ସୁନ୍ଦରଗଡ଼, କେନ୍ଦୁଝର, ମୟୁରଭଞ୍ଜ ଅଞ୍ଚଳରେ ଭୂୟାଁ । ଜାତି ଏକ ଉନ୍ନତ ଜାତି । ଏ ବିଷୟରେ ପୂର୍ବରୁ ବିସ୍ତୃତ ଆଲୋଚନା କରାଯାଇ ଅଛି ।

ପ୍ରାଚୀନ ଉତ୍କଳ ବିନ୍ଧ୍ୟ ପର୍ବତ ନିକଟ ବର୍ତ୍ତୀ ଅଞ୍ଚଳରେ ଥିଲା । "The ancient Utkal was very likely located at the neighbour hood of the maikal hills which link the Satpura with the Vindhyas, Pargithr however suggest that Utkal comprised the southern portion of morden Chhotnagpur and he may be correct since the Chhotnagpur hills are considered to be an extension of the Vindhya ranges.,,★

ଏଥିରୁ ଜଣାଯାଏ ପ୍ରାଚୀନ ଉତ୍କଳ, କଳିଙ୍ଗ ଓ ଓଡ୍ର ରାଷ୍ଟ୍ର ବିଭିନ୍ନ ସମୟରେ ରହି ଆସିଛି । କଳିଙ୍ଗା, କୁଳିଙ୍ଗା ବା କାଳିଙ୍ଗି କ ବୋଲି କଳିଙ୍ଗ ଦେଶର ଲୋକଙ୍କୁ କୁହାଯାଉଥିଲା । ବେଦବ୍ୟାସ ଅଞ୍ଚଳରେ କଳୁଙ୍ଗା ଗ୍ରାମ ଏହାର ସ୍ମାରକୀ ରୂପେ ବିଦ୍ୟମାନ । ପାନପୋଷ ଗ୍ରାମଠାରୁ ଉତ୍ତର ଦିଗରେ ପନ୍ଦର କିଲୋମିଟର ଦୂର କୋଇଲି କୂଳରେ ଜାମ୍ବିରା ନାମକ ଏକ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ରହିଅଛି । ଐତିହାସିକ ମାନେ ଗବେଷଣା କଲେ କିଛି ନୂତନ ସନ୍ଧାନ ପାଇପାରନ୍ତି ।

★ History of Orissa by Dr. N. K. Sahoo, Dr. P. K. Mishra and Dr J. K. Sahu.

# ଦଶମ ପରିଚ୍ଛେଦ

## ଐତିହାସିକ ଯୁଗରେ ବେଦବ୍ୟାସ

ପ୍ରାଚୀନ ପରିସୀମାକୁ ନେଇ ଆଧୁନିକ ସୁନ୍ଦରଗଡ଼ ଜିଲ୍ଲା । ବିଭିନ୍ନ ସମୟରେ କଳିଙ୍ଗ, ଉତ୍କଳ, ଓଡ୍ର ଓ କୋଶଳର ସୀମା ମଧ୍ୟରେ ରହିଆସିଛି । ପ୍ରାଚୀନ ଉତ୍କଳର ପ୍ରବଳ ଗୋଷ୍ଠୀ ରାଜ୍ୟ ବା ଅଞ୍ଚଳ ମଧ୍ୟରେ କଳିଙ୍ଗ ଥିଲା ଶକ୍ତିଶାଳୀ । ଉତ୍ତର ଦକ୍ଷିଣରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏବଂ ପୂର୍ବ-ପଶ୍ଚିମରେ ମହୋଦଧିଠାରୁ ଅମରକଣ୍ଟକ ପର୍ଯ୍ୟନ୍ତ ଭୂଖଣ୍ଡ କଳିଙ୍ଗ ନାମରେ ଅଭିହିତ ହେଉଥିଲା । ଓଡ୍ର, ଉତ୍କଳ ଓ କୋଶଳାଦି ରାଜ୍ୟ କଳିଙ୍ଗର ଅଂଶ ଭାବେ ଥିଲା । * ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଲିଖିତ ମତ୍ସ୍ୟ ଓ ବାୟୁପୁରାଣ ଭାରତର ବିଭିନ୍ନ ଅଞ୍ଚଳର ଉଲ୍ଲେଖ ମିଳେ । ସେଥିରୁ କଳିଙ୍ଗ ବାସୀ ଦକ୍ଷିଣ ଭାରତୀୟ, ଓଡ୍ର ଦେଶବାସୀ (ଉତ୍ତର ଓଡ଼ିଶା) ଓ ଉତ୍କଳବାସୀ (ପାର୍ବତ୍ୟ ଅଞ୍ଚଳ) ବିନ୍ଧ୍ୟବାସୀ ବୋଲି ପରିଚିତ ହେଉଥିଲେ । ମଧ୍ୟଓଡ଼ିଶାର ନାମ ତୋଷାଳିଥିଲା । *

ମଗଧର ନନ୍ଦବଂଶ ରାଜତ୍ୱ ସମୟ ଠାରୁ ଓଡ଼ିଶାର ଲିପିବଦ୍ଧ ଐତିହାସିକ ଯୁଗ ଆରମ୍ଭ ହୋଇଥିବା ଜଣାଯାଏ । ନନ୍ଦବଂଶ ରାଜତ୍ୱ ସମୟରେ କଳିଙ୍ଗ ନନ୍ଦରାଜାଙ୍କ ଦ୍ୱାରା ବିଜିତ ହୋଇଥିଲା ବୋଲି ଖଣ୍ଡଗିରିର ହାତୀଗୁମ୍ଫା ଲିପିରୁ ଜଣାଯାଏ । ନନ୍ଦବଂଶର ପ୍ରଥମ ରାଜା ମହାପଦ୍ମ ନନ୍ଦ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ କଳିଙ୍ଗ ଜୟ କରି ଏକ ଜଳସେଚନ ପ୍ରଣାଳୀ ଖୋଳାଇ ଥିଲେ । ସେହି ନନ୍ଦରାଜା ଯେଉଁ ଜିନମୂର୍ତ୍ତି କଳିଙ୍ଗରୁ ମଗଧକୁ ନେଇଯାଇଥିଲେ, ସମ୍ରାଟ ଖାରବେଳ ମଗଧ ଜୟ କରି ତାକୁ ଉଦ୍ଧାର କରି ଆଣିଥିଲେ ।

---

* ଓଡ଼ିଶାର ଧର୍ମ— ଶ୍ରୀ ଭଗବାନ ପଣ୍ଡା
* ଓଡ଼ିଶା ଇତିହାସ— ଡଃ ହରେକୃଷ୍ଣ ମହତାବ

ନନ୍ଦବଂଶ ଦୁର୍ବଳ ହୋଇ ପଡ଼ିବାରୁ ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ ନନ୍ଦବଂଶକୁ ପରାସ୍ତ କରି ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । କିନ୍ତୁ ମୌର୍ଯ୍ୟସମ୍ରାଟ ଅଶୋକଙ୍କ ପର୍ଯ୍ୟନ୍ତ କଳିଙ୍ଗ ଅବିଜିତ ଥିଲା । ସମ୍ଭବତ ସେତେବେଳେ ଚନ୍ଦ୍ରଗୁପ୍ତଙ୍କ ପୌତ୍ର, ବିନ୍ଦୁସାରଙ୍କ ପୁତ୍ର ଅଶୋକ ବର୍ଦ୍ଧନ (ଖ୍ରୀ.ପୂ. ୨୭୩ ଖ୍ରୀ.ପୂ. ୨୩୨) ପ୍ରଭାବଶାଳୀ ହୋଇ ଖ୍ରୀ. ପୂ. ୨୬୧ରେ କଳିଙ୍ଗ ଜୟକରିଥିଲେ । ଅର୍ଥାତ୍ ଏହି ଭୂଖଣ୍ଡ ନନ୍ଦବଂଶର ପତନଠାରୁ ଅଶୋକଙ୍କ ବିଜୟ ପର୍ଯ୍ୟନ୍ତ (ଖ୍ରୀ.ପୂ. ୩୨୨ ଖ୍ରୀ.ପୂ. ୨୬୧) କଳିଙ୍ଗର [illegible] ରାଜବଂଶର ରାଜତ୍ୱ ବୋଲି ଧରାଯାଏ । ଖ୍ରୀ.ପୂ. ୩୨୭ରେ ଆଲେକଜାଣ୍ଡର ବା ସିକନ୍ଦର ଭାରତ ଆକ୍ରମଣ କରି ପଞ୍ଜାବର ବିପାଶା ନଦୀ କୂଳରେ ଅବସ୍ଥାନ କରୁଥିଲେ । ସେତେବେଳେ ସେ ଜାଣିଥିଲେ ଯେ ଭାରତର ପୂର୍ବ ପ୍ରାନ୍ତରେ 'ପ୍ରାସିଇ' ଓ 'ଗଙ୍ଗାରିଡ଼ାଇ' ନାମକ ଦୁଇଟି ପରାକ୍ରମୀ ରାଜ୍ୟ ଅଛି । 'ମେଗାସ୍ଥିନିସ୍'ଙ୍କ ବିବରଣୀରୁ ଜଣାଯାଏ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ କାଳରେ ଗଙ୍ଗାରିଡ଼ାଇ ରାଜ୍ୟ ଆନ୍ଧ୍ର ରାଜ୍ୟପରି ସ୍ୱାଧୀନ ଥିଲା ଏବଂ ଗଙ୍ଗାରିଡ଼ାଇ ରାଜ୍ୟ ସହିତ କଳିଙ୍ଗ ରାଜ୍ୟ ସଂଯୁକ୍ତ ଥିଲା । ଗଙ୍ଗାନଦୀ 'ଗଙ୍ଗାରିଡ଼ାଇ' ରାଜ୍ୟର ପୂର୍ବସୀମା ଥିଲା ବୋଲି ସେଥିରେ ବର୍ଣ୍ଣିତ ଅଛି ।

ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ସମ୍ରାଟ ଖାରବେଳ (ଖ୍ରୀ.ପୂ. ୧ମ ଶତାବ୍ଦୀ) ବଳରେ ଓ କୌଶଳରେ କଳିଙ୍ଗ ଗୌରବାନ୍ୱିତ ହୋଇଥିଲା । ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ପୂର୍ବରୁ ଏହି ଭୂଖଣ୍ଡରେ ଜୈନଧର୍ମ ପ୍ରଧାନ ଧର୍ମ ଥିଲା । କଳିଙ୍ଗ ଯୁଦ୍ଧପରେ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହେଲେ । ଅଶୋକ ବୌଦ୍ଧଧର୍ମ ଗ୍ରହଣ କରି ଏହି ଧର୍ମର ନୀତି ଅନୁସାରେ ତାଙ୍କ ସାମ୍ରାଜ୍ୟକୁ ଶାସନ କରିଥିଲେ । ସମ୍ରାଟ ଖାରବେଳ ପୁନର୍ବାର ଜୈନଧର୍ମର ପରିପ୍ରସାର କରିଥିଲେ । ସେ ତାଙ୍କର ଶେଷ ଜୀବନରେ ଖଣ୍ଡଗିରି ଓ ଉଦୟଗିରିରେ ଜୈନ ଓ ଅନ୍ୟାନ୍ୟ ସନ୍ନ୍ୟାସୀ ମାନଙ୍କ ବିଶ୍ରାମ ଓ ସାଧନା ପାଇଁ ଗୁମ୍ଫାମାନ ନିର୍ମାଣ କରାଇଥିଲେ । ଖାରବେଳଙ୍କ (ଖ୍ରୀ.ପୂ. [illegible]) ହାତୀଗୁମ୍ଫା ଅଭିଲେଖରୁ ଜଣାଯାଏ ଯେ, କଳିଙ୍ଗରସୀମା ଉତ୍ତରରେ ଅଙ୍ଗ ଓ ମଗଧ ପଶ୍ଚିମରେ [illegible] (ବୈରାଗ), ଦକ୍ଷିଣ ପୂର୍ବରେ ଭଟ୍ଟିକନଗର (କୃଷ୍ଣାବେଣୀ ତୀର ବର୍ତ୍ତୀ) ଏବଂ ଦକ୍ଷିଣରେ ପିଥୁଣ୍ଡନଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ଖାରବେଳଙ୍କ ପରେ କଳିଙ୍ଗ ଖଣ୍ଡ ଖଣ୍ଡ ହୋଇ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଗଲା । ଗୁପ୍ତ ବଂଶ ରାଜତ୍ୱ ପୂର୍ବରୁ ଅର୍ଥାତ୍ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀ ଠାରୁ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ରାଜନୈତିକ ଅବସ୍ଥା ସମ୍ପର୍କରେ କୌଣସି ବିବରଣୀ ମିଳେ ନାହିଁ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଗୁପ୍ତ ବଂଶ ମଗଧ ରାଜ ସିଂହାସନ ଅଧିକାର କରିବା ପରେ ଚନ୍ଦ୍ରଗୁପ୍ତ (ପ୍ରଥମ) ଙ୍କ ପୁତ୍ର ସମୁଦ୍ର ଗୁପ୍ତ (ଖ୍ରୀ ୩୫୦) ବିନ୍ଧ୍ୟ ପର୍ବତ ପାର ହୋଇ ଦକ୍ଷିଣ ଭାରତ ଜୟ କରିବାକୁ ବାହାରିଲେ । ତାଙ୍କର ଜଣେ ସେନାପତି ହରିସେନଙ୍କ ଦ୍ୱାରା ଖୋଦିତ ଏଲାହାବାଦରୁ ମିଳିଥିବା ଲିପିରୁ ଜଣାଯାଏ ସମୁଦ୍ରଗୁପ୍ତ କୋଶଳ ରାଜା ମହେନ୍ଦ୍ରଙ୍କୁ ଜୟକରି ଓଡ଼ିଶାର ମହାକାନ୍ତାରର ବ୍ୟାଘ୍ରରାଜ, ପିଷ୍ଟପୁରର ମହେନ୍ଦ୍ର, ଗିରିକୋଟ୍ଟୁରର ସ୍ୱାମୀ ଦତ୍ତ, ଏରଣ୍ଡ ପଲ୍ଲୀର ଦାମନ, ଦେବରାଷ୍ଟ୍ରର କୁବେରଙ୍କୁ ଜୟ କରିଥିଲେ । ସମୁଦ୍ରଗୁପ୍ତଙ୍କ ଅଭି-ଯାନ ପରେ ପିଷ୍ଟପୁରରେ ଥିବା କଳିଙ୍ଗର ମାଠରମାନେ ଶକ୍ତିଶାଳୀ ହୋଇ ଉଠିଲେ । ସେମାନେ ପିଷ୍ଟପୁରରୁ ରାଜଧାନୀ 'ସିଂହପୁର'କୁ ଉଠାଇ ନେଇଥିଲେ ।

ଏହି ସମୟରେ ମାଠର ବଂଶୀୟ ରାଜାମାନେ (ଖ୍ରୀ. ୩୧୪-୪୩୬) ଦକ୍ଷିଣ ଓଡ଼ିଶା, ପିତୃଭକ୍ତ ଓ ନଳରାଜାମାନେ (ଖ୍ରୀ. ୪୦୦-୬୦୦) ପଶ୍ଚିମ ଓଡ଼ିଶା, ବିଗ୍ରହ ଓ ମୁଦ୍ଗଳମାନେ (ଖ୍ରୀ. ୫୭୦-୬୨୦) ଉତ୍ତର ଓଡ଼ିଶା ଏବଂ ଶୈଳୋଦ୍ଭବ ବଂଶୀୟ ରାଜାମାନେ (ଖ୍ରୀ. ୬୨୪-୭୩୬) ମଧ୍ୟ ଓଡ଼ିଶାରେ ରାଜତ୍ୱ କରୁଥିଲେ । ବାକାଟକ ସାମ୍ରାଜ୍ୟର ରାଜା ହରିସେନ (ଖ୍ରୀ. ୪୭୫-୫୧୦) ତାଙ୍କର ସାମ୍ରାଜ୍ୟ କୁନ୍ତଳ, ଅବନ୍ତୀ, କଳିଙ୍ଗ, କୋଶଳ, ତ୍ରିକୂଟ, ଲାଟ ଓ ଆନ୍ଧ୍ର ରାଜ୍ୟକୁ ବିସ୍ତାର କରିଥିବାର ଅଜନ୍ତା ଶିଳା ଲେଖରୁ ଜଣାଯାଏ । ହରିସେନ ତାଙ୍କର ଜଣେ ଜେନେରାଲ ସରଭରାଜଙ୍କୁ କୋଶଳର ପୂର୍ବ ଅଞ୍ଚଳ ଶାସନ କରିବାକୁ ଛାଡ଼ି ଦେଇଥିଲେ । ସରଭରାଜଙ୍କର ବଂଶଧର ସରଭପୁରୀୟ ବୋଲି ପରେ ନାମିତ ହେଲେ ।

ଓଡ଼ିଶାର ଉପକୂଳ ଅଞ୍ଚଳରେ ଭୌମକର ରାଜବଂଶ (ଖ୍ରୀ. ୭୩୬ରୁ ଖ୍ରୀ. ୯୪୦ ପର୍ଯ୍ୟନ୍ତ ରାଜ୍ୟ ଶାସନ କରୁଥିଲେ । ଭୌମକର ରାଜାମାନଙ୍କର ଓଡ଼ିଶାର ଅନ୍ୟାନ୍ୟ ଛୋଟ ଛୋଟ ରାଜ୍ୟମାନଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ଥିଲା । ମଣ୍ଡଳ ରାଜ୍ୟମାନଙ୍କ ମଧ୍ୟରେ ୧—ଖିଞ୍ଜାଲି ମଣ୍ଡଳର ଭଞ୍ଜବଂଶ,

୨—ଖିଞ୍ଜିଗାମଣ୍ଡଳର ଭଞ୍ଜ ବଂଶ, ୩—କୋଦାଳକ ମଣ୍ଡଳର ଶୁଳିକ ବଂଶ ୪—ଜୟଗର୍ତ୍ତି ମଣ୍ଡଳର ତୁଙ୍ଗ ବଂଶ, (୫) ଐରାବତ ମଣ୍ଡଳର ନନ୍ଦ ବଂଶ ୬—ଶ୍ୱେତକମଣ୍ଡଳର ଗଙ୍ଗବଂଶ, ୭—ବଣାଇ ମଣ୍ଡଳର ମୟୂର ବଂଶ, ଭୌମକର ରାଜାଙ୍କର ବଶ୍ୟତା ସ୍ୱୀକାର କରୁଥିଲେ ।

**୧-ଖିଞ୍ଜାଲିମଣ୍ଡଳ**—ଏହି ମଣ୍ଡଳ ସୋନପୁର-ବୌଦ ଅଞ୍ଚଳକୁ ନେଇ ଗଠିତ ହୋଇଥିଲା । ଭଞ୍ଜ ବଂଶ ଏହାର ରାଜଧାନୀ ଧୃତିପୁର (ବୌଦ) ଠାରେ ପ୍ରତିଷ୍ଠା କରିଥିଲେ ।

**୨-ଖିଞ୍ଜିଗା ମଣ୍ଡଳ**—ଏହି ମଣ୍ଡଳ ମୟୂରଭଞ୍ଜ, କେନ୍ଦୁଝରର କେତେକ ଅଂଶକୁ ନେଇ ଗଠିତ । ଏଠାରେ ଭଞ୍ଜ ବଂଶର ରାଜା ଖିଞ୍ଜିଗା କୋଟ (ଖିଚିଂଗ) ଠାରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ଏହି ଅଞ୍ଚଳ ଖ୍ରୀ. ୧୧୩୦ ମସିହାରେ କାଲଚୁରୀ ବଂଶର ରାଜା ଦ୍ୱିତୀୟ ଚନ୍ଦ୍ରଦେବଙ୍କ ଅଧୀନକୁ ଚାଲିଯାଇଥିଲା । ଏହି ଯୁଦ୍ଧରେ ଓଡ଼ିଶାର ରାଜା ଚୋଡ଼ଗଙ୍ଗଦେବଙ୍କୁ ଏହି ଅଞ୍ଚଳ ଛାଡ଼ିବାକୁ ପଡ଼ିଥିଲା ।

**୩- କୋଦାଳକ ମଣ୍ଡଳ**—ଢେଙ୍କାନାଳର କେତେକ ଅଞ୍ଚଳକୁ ନେଇ ଗଠିତ । ଏହି ରାଜ୍ୟରେ ଶୁଳିକ ବଂଶର ରାଜାମାନେ ରାଜତ୍ୱ କରୁଥିଲେ । ଏହାର ରାଜଧାନୀ କୋଦାଳ (କୁଆଳ) ଠାରେ ଥିଲା । ଶୁଳିକମାନେ ସାର୍ବଭୌମ ଅଧିକାରୀ ଭାବେ ବ୍ୟବହାର କରୁଥିବାରୁ ଭୌମକର ରାଜାମାନେ ଏହାକୁ ଦୁଇ ରାଜନୈତିକ ବିଭାଗରେ ବିଭକ୍ତ କଲେ—(କ) ଜୟଗର୍ତ୍ତିମଣ୍ଡଳ ଓ (ଖ) ଐରାବତମଣ୍ଡଳ । ଏହି ବିଭାଜନ ଖ୍ରୀ. ୮୬୪ ପରେ ହୋଇଥିବା ଜଣାଯାଏ । ଶୁଳିକ ବଂଶର ରାଜାମାନଙ୍କ ତାମ୍ରଶାସନରୁ ଜଣାଯାଏ ଯେ ସେମାନେ ଗଣ୍ଡମଣ୍ଡଳର ରାଜାଥିଲେ । ମଣ୍ଡଳ ରାଜ୍ୟ ମାନଙ୍କ ମଧ୍ୟରେ ଗଣ୍ଡମଣ୍ଡଳ ଗାଙ୍ଗପୁର, ବାମଣ୍ଡା, ବଣାଇ ଓ କେନ୍ଦୁଝରର କେତେକ ଅଂଶ ନେଇ ଅବସ୍ଥିତ ଥିଲା । ଏହି ସବୁ ଅଞ୍ଚଳରେ ଗଣ୍ଡଜାତି ବର୍ତ୍ତମାନ ବାସ କରୁଛନ୍ତି । ତାମ୍ରଶାସନରେ ଥିବା ଶଙ୍ଖକୋଠୀ ବ୍ରାହ୍ମଣୀର ଉପନଦୀ ଶଙ୍ଖନଦୀ ରୂପେ ଚିହ୍ନିତ ହୋଇଛି । *

---

* ଓଡ଼ିଆ ଭାଷାର ଇତିହାସ— ପଣ୍ଡିତ ବିନାୟକ ମିଶ୍ର

**୪- କଟଗଡ଼ ମଣ୍ଡଳ** — ଢେଙ୍କାନାଳ ଏବଂ କେନ୍ଦୁଝରର କିଛି ଅଂଶକୁ ନେଇ ଭୁଙ୍ଗବଂଶ ମହାରାଜା ନଗ୍ନ (ମାର୍କଣ୍ଡନାଳ) କୂଳରେ ତାଙ୍କର ରାଜଧାନୀ ପ୍ରତିଷ୍ଠା କରିଥିଲେ । ଏହି ଭୁଙ୍ଗବଂଶ ବେଦବ୍ୟାସ ଅଞ୍ଚଳର ଉତ୍ତରକୁ ବହାରର ରୋହତାସଗିରି କିମ୍ବା ଶ୍ୱେତଶଗଡ଼ ଅଞ୍ଚଳରୁ ଆସିଥିବା ଜଣାଯାଏ ।

**୫-ଐରାବତ ମଣ୍ଡଳ**— ଢେଙ୍କାନାଳ, କଟକର ଆଠଗଡ଼ ଏବଂ ବାଙ୍କି ସବ୍‌ଡିଭିଜନ, ପୁରୀର ନୟାଗଡ଼ ସବ୍‌ଡିଭିଜନକୁ ନେଇ ଗଠିତ । ଢେଙ୍କାନାଳର ଦକ୍ଷିଣକୁ ଜୟପୁର ଏହାର ରାଜଧାନୀ ଥିଲା । ଏଠାରେ ନନ୍ଦୀବଂଶର ରାଜାମାନେ ରାଜତ୍ୱ କରୁଥିଲେ । ପରେ ଏଠାରେ ଶୂଲକି ରାଜାମାନେ ରାଜତ୍ୱ କରୁଥିଲେ । ଏହି ରାଜ୍ୟ ଖ୍ରୀ.୯୬୦ ଠାରୁ ସୋମବଂଶୀ ରାଜାମାନଙ୍କ ଅଧୀନକୁ ଆସିଲା ।

**୬-ଶ୍ୱେତକ ମଣ୍ଡଳରେ ଗଙ୍ଗବଂଶ**— ଆଧୁନିକ ଗଞ୍ଜାମ ଜିଲ୍ଲାର ସାନଖେମେଣ୍ଡି, ବଡ଼ଖେମେଣ୍ଡି ଓ ଚିକିଟିକୁ ନେଇ ମହେନ୍ଦ୍ରଗିରିର ଉତ୍ତର ପୂର୍ବ ଅଞ୍ଚଳ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଶ୍ୱେତକାଧିରାଜ୍ୟ ପୂର୍ବ ଗଙ୍ଗବଂଶ ସ୍ଥାପନ କରିଥିଲେ । ଏହାର ରାଜଧାନୀ ଶ୍ୱେତକ ବା ଚିକିଟି ଥିଲା । ଏମାନେ ଭୌମକର ରାଜାମାନଙ୍କର କରଦ ରାଜାରୂପେ ରାଜ୍ୟ ଶାସନ କରିଥିଲେ ।

**୭-ବଣେଈ ମଣ୍ଡଳ**— ସୁନ୍ଦରଗଡ଼ ଜିଲ୍ଲାର ବଣେଇ ସବ୍‌ଡିଭିଜନ ଏବଂ ପାନପୋଷ ସବ୍‌ଡିଭିଜନର କେତେକ ଅଞ୍ଚଳକୁ ନେଇ ଏହି ରାଜ୍ୟ ଗଠିତ ହୋଇଥିଲା । ଖ୍ରୀଷ୍ଟୀୟ ୮ମ-୯ମ ଶତାବ୍ଦୀରେ ଏଠାରେ ମୟୂର-ବଂଶ ରାଜାମାନେ ରାଜତ୍ୱ କରୁଥିଲେ । ଏମାନଙ୍କର ବରାହ ଉପାଧି ଥିଲା । ଏମାନେ ଭୌମକର ରାଜାମାନଙ୍କର କରଦ ରାଜାରୂପେ ରାଜ୍ୟ ଶାସନ କରୁଥିଲେ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ମଧ୍ୟଭାଗରେ ସୋମବଂଶୀ ରାଜାମାନେ ମୟୂରବଂଶ ରାଜାମାନଙ୍କୁ ତାମ୍ରଲିପ୍ତ ଅଞ୍ଚଳକୁ ତଡ଼ିଦେଇ ରାଜ୍ୟଶାସନ କଲେ । ସୋମବଂଶୀ ରାଜାମାନେ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଶାସନ କରିଥିବାର ଜଣାଯାଏ । ଏହି ଅଞ୍ଚଳକୁ ରତ୍ନପୁରର କଳଚୁରି-ବଂଶର ରାଜାମାନେ ଖ୍ରୀ. ୧୧୦୦ରୁ ଖ୍ରୀ. ୧୧୫୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।*

ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ଗଙ୍ଗ ବଂଶର ରାଜା ଅନଙ୍ଗ ଭୀମଦେବଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ପରେ ପରେ ବଣେଇ ରାଜ୍ୟ କଦମ୍ବ ବଂଶ ଦ୍ୱାରା ୧୯୪୮ରେ ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ ଶାସିତ ହୋଇଥିଲା ।

କେନ୍ଦୁଝରର ଆସନପାଟରୁ ଖ୍ରୀଷ୍ଟୀୟ ୩ୟ-୪ର୍ଥ ଶତାବ୍ଦୀର ମିଳିଥିବା ଶିଳାଲେଖରୁ ଜଣାଯାଏ ଯେ ରାଜା ଶତ୍ରୁଭଞ୍ଜ ବନ୍ଧ୍ୟାବଣ୍ଡ ରାଜ୍ୟ ଶାସନ କରୁଥିଲେ । ଏଥିରୁ ଅନୁମିତ ହୁଏ ବନ୍ଧ୍ୟାବଣ୍ଡ ରାଜ୍ୟ ବିନ୍ଧ୍ୟ ପର୍ବତ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା କିମ୍ବା କେନ୍ଦୁଝର ନିକଟରେ ଥିବା ଶୁଆକାଟୀ ସଂଲଗ୍ନ ପର୍ବତର ନାମ ବିନ୍ଧ୍ୟ ପର୍ବତ ହୋଇଥିବାରୁ ଏବଂ ସେହି ପର୍ବତ ବଣେଇ ଓ ବେଦବ୍ୟାସ ଅଞ୍ଚଳକୁ ପରିବ୍ୟାପ୍ତ ଥିବାରୁ ବେଦବ୍ୟାସ ଅଞ୍ଚଳ ସେହି ବନ୍ଧ୍ୟାବଣ୍ଡ ରାଜ୍ୟର ଅନ୍ତର୍ଗତ ଥିଲା । ସମୁଦ୍ରଗୁପ୍ତଙ୍କ (ଖ୍ରୀ: ୩୫୦) ଏଲାହାବାଦ ଶିଳାଲେଖ ଅନୁସାରେ କୋଶଳର ରାଜା ମହେନ୍ଦ୍ରଙ୍କୁ ପରାସ୍ତ କରିଥିଲେ । ଐତିହାସିକମାନଙ୍କ ମତରେ ବନ୍ଧ୍ୟାବଣ୍ଡ ରାଜ୍ୟ ହିଁ ଦକ୍ଷିଣ କୋଶଳ ହୋଇପାରେ ।

ଅଜନ୍ତା ଶିଳା ଲେଖ ଅନୁସାରେ ବାକାଟକର ରାଜା ହରିସେନ (ଖ୍ରୀ ୪୭୫-୫୧୦) କୋଶଳ ଜୟ କରିଥିଲେ ଏବଂ ତାଙ୍କର ଜଣେ ଜେନେରାଲ ସରଭରାଜଙ୍କୁ କୋଶଳର ପୂର୍ବ ଅଞ୍ଚଳ ଛାଡ଼ି ଦେଇଥିଲେ । ସେ ସରଭପୁରଠାରେ ସରଭପୁରୀୟ ରାଜବଂଶ ପ୍ରତିଷ୍ଠା କରିଥିଲେ । ଭାନୁଗୁପ୍ତଙ୍କ ସମୟର ଇରାନ ଶିଳାଲେଖ ଅନୁସାରେ (୧୯୧ ଗୁପ୍ତାବ୍ଦ ବା ଖ୍ରୀଷ୍ଟୀୟ ୫୧୧) ସରଭରାଜ ହେଉଛନ୍ତି ଗୋପରାଜଙ୍କର ପିତାମହ (maternal grandfather) ଏବଂ ସେ ମହାରାଜା ନରେନ୍ଦ୍ରଙ୍କର ପିତା । ସେ ତାଙ୍କର ରାଜଧାନୀ ସରଭପୁର ଆଧୁନିକ ସରଫଗଡ଼ ସୁନ୍ଦରଗଡ଼ ଜିଲ୍ଲା ଲେଫ୍ରିପଡ଼ା ନିକଟରେ ଅବସ୍ଥିତ ବୋଲି ଐତିହାସିକ ଭି. ଭି. ମିରାଶି ଓ ଏଲ. ପି. ପାଣ୍ଡେ ସ୍ଥିର କରିଛନ୍ତି । ଐତିହାସିକ ନବୀନ ସାହୁ କଳାହାଣ୍ଡି ଜିଲ୍ଲାର ନୂଆପଡ଼ା ସବ୍‌ଡିଭିଜନର ମାରାଗୋଡ଼ା ଉପତ୍ୟକାର ଉପରେ ଯୁମଲାଗଡ଼ ବୋଲି ଏକ ପୁରୁଣା ଦୁର୍ଗକୁ 'ସରଭପୁର' ହୋଇପାରେ ବୋଲି ଅନୁମାନ କରନ୍ତି ।

**ପୁରାତନ ଦୁର୍ଗ-ଯୁନାଗଡ଼—**

ସୁନ୍ଦରଗଡ଼ ଜିଲ୍ଲା ହେମଗିରିର ଶୁଖାବନ୍ଧ ଗ୍ରାମଠାରୁ ୩ କି. ମି.

ଦୂର ଯୁନାଗଡ଼ * ଅର୍ଥାତ୍ ପୁରୁଣାଗଡ଼ର ଭଗ୍ନାବଶେଷ ଦେଖିବାକୁ ମିଳେ । ସେ ଗଡ଼ର ଚତୁଃପାର୍ଶ୍ୱରେ ପ୍ରାକୃତିକ ପରିଖା ଅଛି । ଚିରସ୍ରୋତା ଝରଣା ସେହି ପରିଖାରେ ପ୍ରବାହିତ ହେଉଛି । ପରିଖା ମଧ୍ୟରେ ଏକ ଉଚ୍ଚ ପାହାଡ଼ ଅଛି । ସେ ସ୍ଥାନରୁ ସବୁ ସ୍ଥାନକୁ ଦେଖି ହୁଏ । ସେହି ଉଚ୍ଚ ସ୍ଥାନକୁ ଯିବା ପାଇଁ ଏକମାତ୍ର ରାସ୍ତା ପାହାଚ ହୋଇଛି । ସେହି ସ୍ଥାନରେ ଦୁର୍ଗର ଭଗ୍ନ ପ୍ରାଚୀର ବିଦ୍ୟମାନ । ପରିଖା ଅତିକ୍ରମ କରିବା ପୂର୍ବରୁ ପାହାଚର ବାମ ପାର୍ଶ୍ୱରେ ଏକ ମନୁଷ୍ୟର ମୂର୍ତ୍ତି ପଥରରେ ଖୋଦେଇ ହୋଇଛି । ସେହି ମନୁଷ୍ୟର ମୁଣ୍ଡ ନାହିଁ ଯଦି କୌଣସି ଶତ୍ରୁ ପକ୍ଷ ଦୁର୍ଗ ମଧ୍ୟକୁ ଯାନ୍ତି ସେଠାରେ ତାଙ୍କୁ ବଳି ଦିଆହୁଏ । ପାହାଚ ଅତିକ୍ରମ କରି ଦୁର୍ଗ ମଧ୍ୟକୁ ଯିବା ପୂର୍ବରୁ ପ୍ରଥମେ ଗଣେଶଙ୍କର ଏକ ମୂର୍ତ୍ତି ଏକ ବଡ଼ ପଥରେ ଖୋଦେଇ ହୋଇଛି ଏବଂ ସେଠାରେ ଅନ୍ୟ ଏକ ଦୁର୍ଗାମୂର୍ତ୍ତି ଖୋଦିତ ହୋଇଛି । ଦୁର୍ଗର ବାହାରେ ଏକ ସତୀସ୍ତମ୍ଭ ଦେଖାଯାଏ ।

ଶୁଖା ବନ୍ଧରେ ଯେଉଁ ମହାଦେବ ମନ୍ଦିର ଅବସ୍ଥିତ ତାହା ପୂର୍ବର ମନ୍ଦିର ପତନ ଉପରେ ନିର୍ମିତ ଏକ ନୂତନ ମନ୍ଦିର । ସେ ସ୍ଥାନରେ ଏକ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ଦୃଷ୍ଟି ଗୋଚର ହୁଏ । ସେଠାରେ ଗଦା ହୋଇଥିବା ପ୍ରସ୍ତର ମଧ୍ୟରୁ ଏକ ଶିଳାରେ ପୁରାତନ ମନ୍ଦିରର ମୁଖ୍ୟ ଦ୍ୱାରର କାରୁ କାର୍ଯ୍ୟ ଦୃଷ୍ଟି ଗୋଚର ହୁଏ । ସେଥିରେ ସୁନ୍ଦର ସୁନ୍ଦର ଲତା ଏବଂ ତଳ ଧାଡ଼ିରେ ଲକ୍ଷ୍ମୀ ପଦ୍ମାସନରେ ଉପବିଷ୍ଟ । ତାଙ୍କର ବାମପାର୍ଶ୍ୱରେ ଦୁଇଟି ହଂସ କମଳିତ ଦଳକୁ ମୁଖ କରିଛନ୍ତି ଏବଂ ଦକ୍ଷିଣ ପାର୍ଶ୍ୱରେ ଯୁଗ୍ମ ଅଶ୍ୱାରୋହୀ ରହିଛି । ଉପର ଧାଡ଼ିରେ ଉଷ୍ଟ ବା ବାଦୁଡ଼ି ଗୁଡ଼ିକ ରହିଛି । ଭଗ୍ନ ଶିଳା ମଧ୍ୟରୁ ଗୋଟିଏ ସୁନ୍ଦର ତନ୍ତ୍ରର ମୂର୍ତ୍ତି ଦୃଷ୍ଟିଗୋଚର ହୁଏ । କେତେ ଗୁଡ଼ିଏ ଦ୍ୱାର ପାଳ ମୂର୍ତ୍ତି ଓ କାର୍ତ୍ତିକେୟଙ୍କ ମୂର୍ତ୍ତି ଅଛି । ସେହି କାର୍ତ୍ତିକେୟ ଷଷ୍ଠ ଆନନ ବିଶିଷ୍ଟ । ଠିକ୍ ମୁଖ୍ୟ ମନ୍ଦିରର ପାର୍ଶ୍ୱଦେବଙ୍କ ପରି ବାମ ହସ୍ତରେ ଥିବା ପାପୁଲି ଉପରେ କୁକୁଡ଼ାକୁ (ମୃଗ?) ବସାଇଛନ୍ତି । ସେଠାରେ ଭୈରବ ମୂର୍ତ୍ତିଟି ଗୋଟିଏ ଗଛମୂଳେ ରହି ପୂଜା ପାଉଛନ୍ତି । ସେ ଚତୁର୍ଭୁଜ ବିଶିଷ୍ଟ ଖଡ଼୍‌ଗ ଧାରଣ କରିଛନ୍ତି, ଦକ୍ଷିଣ ପାର୍ଶ୍ୱରେ ଏକ ଶୃଗାଳ ରହିଛି ।

ଶୁଖା ବନ୍ଧରେ ଥିବା ମହାଦେବ ମନ୍ଦିରଟି ପୁରାତନ ମନ୍ଦିର ଉପରେ ନୂତନ ମନ୍ଦିର ନିର୍ମାଣ ବା ପୁନରୁଦ୍ଧାର ହୋଇଛି । ମନ୍ଦିରର ଦକ୍ଷିଣ ପାର୍ଶ୍ୱର

* ଯୁନା—ପୁରୁଣା ଜୁନା ଶବ୍ଦଟି ସମ୍ବଲପୁର ଅଞ୍ଚଳର ବ୍ୟବହୃତ ଶବ୍ଦ ।

ପାର୍ଶ୍ୱଦେବ ହେଉଛନ୍ତି ଗଣେଶ । ଚତୁର୍ଭୁଜ ଗଣେଶ ଦକ୍ଷିଣ ହସ୍ତରେ ମାଳା ଓ ଲେଖନୀ ଧରିଛନ୍ତି । ବାମ ହସ୍ତରେ ଲଡ଼ୁ ଓ ଉପବୀତ ଧାରଣ କରିଛନ୍ତି । ଦେହରେ ସର୍ପ ଉପବୀତ ଏବଂ ମାଳା ଲମ୍ବାଇଛନ୍ତି । ପଶ୍ଚିମ ପାର୍ଶ୍ୱଦେବ ହେଉଛନ୍ତି କାର୍ତ୍ତିକେୟ । ଚତୁଃର୍ଭୁଜ ବିଶିଷ୍ଟ । ଷଷ୍ଠ ଆନନ ଉପରେ ଛଅଟୋଟି ଶିରସ୍ତ୍ରାଣ ଅଛି । ବାମହସ୍ତ ପାପୁଲି ଉପରେ କୁକୁଡ଼ା ଧାରଣ କରିଛନ୍ତି । ଉତ୍ତର ପାର୍ଶ୍ୱର ପାର୍ଶ୍ୱଦେବୀ ହେଉଛନ୍ତି ପାର୍ବତୀ । ସେ ଚତୁଃର୍ଭୁଜା ବାମହସ୍ତ ବରଦ ମୁଦ୍ରା ଓ ପଦ୍ମଧାରଣ କରିଛନ୍ତି ଏବଂ ଦକ୍ଷିଣ ହସ୍ତ ଗୋଟିଏ ଭଗ୍ନ ଓ ଅନ୍ୟ ହସ୍ତରେ ବଜ୍ର ଧାରଣ କରିଛନ୍ତି । ମଥାରେ ମୁକୁଟ ବିଦ୍ୟମାନ ।

ଲୋକ ମୁଖରୁ ଏବଂ କିମ୍ବଦନ୍ତୀରୁ ଜଣାଯାଏ ଏହି ଯୁନାଗଡ଼ ଠାରେ କେଶରୀ ରାଜା ରାଜତ୍ୱ କରୁଥିଲେ । ଏହା ଅମରାର୍ଯ୍ୟ କୁଳ ବା ସରଭପୁରୀୟ ମାନଙ୍କର ରାଜଧାନୀ ନହୋଇଥିବ କିଏ କହିବ ? ଏହା ଐତିହାସିକ ମାନଙ୍କର ଗବେଷଣା ସାପେକ୍ଷ । ସୁନ୍ଦରଗଡ଼ ଜିଲ୍ଲାରେ ସରପଂଗଡ଼ ବେଲସରଗଡ଼ ପ୍ରଭୃତି ରେ ସେହିପରି କେଶରୀ ରାଜାମାନେ ରାଜତ୍ୱ କରୁଥିବା ଜନଶ୍ରୁତିରୁ ଜଣାପଡ଼େ । ଡଃ ହରେକୃଷ୍ଣ ମହତାବ ଏହି ବିଷୟ ଲେଖିବାକୁ ଯାଇଁ କହିଛନ୍ତି, "ଓଡ଼ିଶାର ପୁରପଲ୍ଲୀରେ ବହୁ ଶତାବ୍ଦୀ ଯାବତ୍ କେଶରୀବଂଶ ନାମରେ ଏତେ ଜନଶ୍ରୁତି ପ୍ରଚଳିତ ଓ ସେହି ଜନଶ୍ରୁତି ଉପରେ ଏତେ ସାହିତ୍ୟ ପ୍ରତିଷ୍ଠିତ ଯେ ଓଡ଼ିଶା ଇତିହାସରେ କେଶରୀ ବଂଶବୋଲି କାହାକୁ ନିର୍ଦ୍ଦିଷ୍ଟ ଭାବରେ କୁହାଯିବ ତାହା ଏକ ଜଟିଳପ୍ରଶ୍ନ । ମିଳିଥିବା ତାମ୍ର ଶାସନ ବା ଅନ୍ୟାନ୍ୟ ଅଭିଲେଖରେ କୌଣସି ବଂଶ କେଶରୀ ବଂଶବୋଲି ବର୍ଣ୍ଣିତ ହୋଇନାହାନ୍ତି । ତଥାପି ସୁଦୀର୍ଘ କେଶରୀ ବଂଶର ରାଜତ୍ୱ ଜନଶ୍ରୁତିରେ ରହିଛି । ✻ ଡଃ ମହତାବ ଭୌମକର ଓ ସୋମବଂଶ ଦୁଇଟି କେଶରୀବଂଶ ବୋଲି ଜନଶ୍ରୁତିରେ ପ୍ରଚଳିତ ଅଛିବୋଲି କହିଛନ୍ତି କିନ୍ତୁ ଭୁବନେଶ୍ୱରକୁ କେନ୍ଦ୍ରକରି ଯେଉଁ ସାହିତ୍ୟ ରଚିତ ହୋଇଛି ସେଥିରେ ସୋମବଂଶ ହିଁ କେଶରୀବଂଶ ବୋଲି ଷୋଡ଼ଶ ଶତାବ୍ଦୀରେ ପରିଚିତ ହେଲା । ସୋମବଂଶ ଓ ସରଭପୁରୀୟ ବଂଶଙ୍କର ଏକ ରାଜଧାନୀ ଶ୍ରୀପୁର ଥିବାରୁ ହୁଏତ ସରଭପୁରୀୟ ମାନଙ୍କୁ ମଧ୍ୟ କେଶରୀ ବଂଶବୋଲି ଜନଶ୍ରୁତିରେ କହିଆସୁଛନ୍ତି ।

✻ ଓଡ଼ିଶା ଇତିହାସ— ଡଃ ହରେକୃଷ୍ଣ ମହତାବ

## ସରଭପୁର—

ସରଭପୁରୀୟ ବଂଶର ସରଭ ଖ୍ରୀ. ୫୦୦-୫୨୫ ମହାରାଜ ନରେନ୍ଦ୍ର, ମହେନ୍ଦ୍ରାଦିତ୍ୟ, ପ୍ରସନ୍ନ ମାତ୍ର, ମନମାତ୍ର (ଜୟରାଜ) ସୁଦେବରାଜ(ଖ୍ରୀ.୬୩୦-୬୫୫) ଏମାନେ ସମସ୍ତେ ସରଭପୁର ରାଜଧାନୀରୁ ଶାସନକରୁଥିଲେ । ସୁଦେବରାଜଙ୍କ ଭାଇ ପ୍ରବରରାଜା ସେ ନିଜେ ରାଜାହୋଇ ପ୍ରଥମେ ଶ୍ରୀପୁର ରାଜଧାନୀରୁ ଶାସନକଲେ ଏବଂ ପ୍ରବର ରାଜଙ୍କ ସାନଭାଇ ବ୍ୟାଘ୍ରରାଜ ଶ୍ରୀପୁରର ଗଭର୍ଣ୍ଣର ଥିଲେ ସମ୍ଭବତଃ ବଡ଼ଭାଇଙ୍କ ଠାରୁ ବା ସରଭପୁରଠାରୁ ଅଲଗାହୋଇ ଶ୍ରୀପୁରରେ ଅନ୍ୟରାଜଧାନୀ କରିଥିଲେ । ସୁଦେବରାଜଙ୍କ ଠାରୁ ଦୁର୍ଗରାଜ ଏବଂ ସୁଦେବରାଜ ୨ୟ ସରଭପୁର ଠାରୁ ଶାସନ କରିଥିଲେ । ସେ ସମୟରେ ବେଦବ୍ୟାସ ଅଞ୍ଚଳ ସରଭପୁର ଠାରୁ ଶାସିତ ହେଉଥିଲା । ରାୟପୁର, ସାରଙ୍ଗଗଡ଼, ଆରଙ୍ଗ ଓ ଖଡ଼ିଆଳରୁ ଆବିଷ୍କୃତ ତାମ୍ରପଟ୍ଟରୁ ଦ୍ୱାରା ଜଣାଯାଏ । ଏହି ଅଞ୍ଚଳ ସବୁ ସରଭପୁର ଠାରୁ ଶାସିତ ହେଉଥିଲା । *

କୋଶଳ ଓ ମେକଳ ଦୁଇଟି ପଡ଼ୋଶୀ ରାଜ୍ୟ ଏବଂ ସରଭପୁରୀୟ ରାଜ୍ୟକନ୍ୟା ମେକଳ ରାଜା ଭରତବଳଙ୍କୁ ବିବାହ କରିଥିବାରୁ ଭରତବଳଙ୍କ କନିଷ୍ଠ ପୁତ୍ରଙ୍କ ପୁତ୍ର ଇନ୍ଦ୍ରବଳଙ୍କୁ ସରଭପୁର ପଠାଯାଇଥିଲା ଶ୍ରୀପୁରର ଆକ୍ରମଣକୁ ପ୍ରତିହତ କରିବା ପାଇଁ । ପରିଶେଷରେ ସରଭପୁରୀୟ ରାଜା ସୁଦେବରାଜ (୨ୟ) ଇନ୍ଦ୍ରବଳଙ୍କ ଶ୍ରୀପୁର ଅଧିକାର କଲେ ଏବଂ ଇନ୍ଦ୍ରବଳଙ୍କୁ ଶ୍ରୀପୁର ଅଞ୍ଚଳ ସାମନ୍ତ ରାଜା ହିସାବରେ ଶାସନ କରିବାକୁ ଛାଡ଼ିଦେଲେ । ତାଙ୍କ ପରେ ତାଙ୍କ ପୁତ୍ର ନାନ୍ନାରାଜ ଶାସନ କଲେ । ସମ୍ଭବତଃ ପାଣ୍ଡୁବଂଶୀ ରାଜା ନାନ୍ନାରାଜମେକଳ ଏବଂ ଶ୍ରୀପୁର ଅଞ୍ଚଳ ଶାସନ କଲେ ।

## ସୋମବଂଶ—

ପାଣ୍ଡୁବଂଶୀ ରାଜା ନାନ୍ନାରାଜାଙ୍କ ପୁଅ ତିଭରଦେବ ସୁଦେବରାଜ ଅପୁତ୍ରିକ ଥିବାରୁ ସମଗ୍ର କୋଶଳର ସାର୍ବଭୌମ ଶାସକ ହେଲେ । ତିଭର ଦେବ (ଖ୍ରୀ ୭୦୦-୭୨୫) ସୋମବଂଶର ପ୍ରତିଷ୍ଠାତା । ତାଙ୍କ ପୁତ୍ର ଚନ୍ଦ୍ରଗୁପ୍ତ ହର୍ଷଗୁପ୍ତ, ରାଣୀ ବାସଟା ଓ ବାଳାର୍ଜ୍ଜୁନ ଶ୍ରୀପୁରଠାରୁ ଶାସନ କରୁଥିଲେ ।

* ଖଡ଼ିଆଳର ଇତିହାସ — ଶ୍ରୀମତୀ ରାଜଶ୍ରୀ ଦେବୀ

କଲଚୁରି ରାଜ ବଂଶର ପାର୍ଦ୍ଦୁର୍ଭାବ ଯୋଗୁଁ ପ୍ରଥମ ଜନ୍ମେଜୟ ତାଙ୍କର ରାଜଧାନୀ ଶ୍ରୀପୁରରୁ ସୋନପୁର-ବୌଦ ଅଞ୍ଚଳକୁ ଉଠାଇ ନେଲେ । ଜନ୍ମେଜୟଙ୍କ ପୁତ୍ର ଯଯାତି-୧ମ ଏବଂ ତାଙ୍କ ପୁତ୍ର ଭୀମରଥଙ୍କ ସମୟର ତାମ୍ର ପତ୍ର ସମ୍ବଲପୁରର କୁଦୋପାଲି ଠାରୁ ମିଳିଛି । ସେଥିରେ ବାମଣ୍ଡାରେ ଭୀମରଥଙ୍କର ଜଣେ ସାମନ୍ତ ରଣାଙ୍କ-ପୁଞ୍ଜ, ବୋଡ଼ାଙ୍କର ପୁତ୍ର ଶାସନ କରୁ-ଥିବାର ଜଣାଯାଏ ! ସମ୍ଭବତଃ ଖ୍ରୀ. ୯୦୫-୯୬୦ ମଧ୍ୟରେ ବାମଣ୍ଡା ସହିତ ଆଧୁନିକ ସୁନ୍ଦରଗଡ଼ର କିଛି ଅଂଶ ରଣାଙ୍କ ପୁଞ୍ଜଙ୍କ ଅଧୀନରେ ଥିଲା । ଚନ୍ଦ୍ରିହର ଯଯାତି (ଖ୍ରୀ. ୧୦୨୩-୧୦୪୦) କଙ୍ଗୋଦ, କଳିଙ୍ଗ, ଉତ୍କଳ ଓ କୋଶଳର ରାଜା ହେଲେ । ତାଙ୍କ ପରେ ତାଙ୍କ ପୁତ୍ର ଉଦ୍ୟୋତ କେଶରୀ (ଖ୍ରୀ. ୧୦୪୦-୧୦୬୫) ରାଜା ହେଲେ । କଲଚୁରି ଆକ୍ରମଣରୁ ରକ୍ଷା ପାଇବା ପାଇଁ 'ବାମଣ୍ଡା ମଣ୍ଡଳ' ଏକ ମଣ୍ଡଳ ଗଢ଼ି ଶ୍ରୀପୁଞ୍ଜା ବୋଲି ଜଣେ ସାମରିକ ଅଫିସର ଅଧୀନରେ ତାର ଶାସନଭାର ଅର୍ପଣ କଲେ । ସୁନ୍ଦରଗଡ଼ର କିଛି ଅଂଶ ସେହି ବାମଣ୍ଡାମଣ୍ଡଳ ମଧ୍ୟରେ ଥିଲା । ଉଦ୍ୟୋତ କେଶରୀଙ୍କ ମୃତ୍ୟୁ ପରେ ତୁମ୍ମାନର କଲଚୁରି ବାମଣ୍ଡା ଅଧିକାର କରିଥିଲେ । ସୋମ ବଂଶୀରାଜା ୨ୟ ଜନ୍ମେଜୟ (ଖ୍ରୀ. ୧୦୬୫-୧୦୮୦), ପୁରଞ୍ଜୟ (ଖ୍ରୀ. ୧୦୮୦ ୧୦୯୦) ଏବଂ କର୍ଣ୍ଣଦେବ (ଖ୍ରୀ. ୧୦୯୦-୧୧୧୮) ପର୍ଯ୍ୟନ୍ତ ଶାସନ କଲେ ମଧ୍ୟ ବେଦବ୍ୟାସ ଅଞ୍ଚଳକୁ ପୁନରାୟ ଫେରାଇଆଣି ପାରିଲେ ନାହିଁ । କୋଶଳ ଅଞ୍ଚଳ- ଖ୍ରୀ: ୧୦୭୦ ଠାରୁ ତେଲ୍‌ଗୁ ଚୋଡ଼ଙ୍କ ଅଧୀନକୁ ଏବଂ ଉତ୍କଳ ଖ୍ରୀ: ୧୧୧୨ ଠାରୁ ଗଙ୍ଗ ବଂଶ ଅଧୀନକୁ ଚାଲିଗଲା ।

## ତେଲଗୁଚୋଡ଼ ଏବଂ କଲଚୁରୀ—

ଖ୍ରୀ: ୧୦୭୦ରେ ଚକ୍ରକୋଟର ନାଗ ରାଜା ସୋମେଶ୍ୱରଙ୍କର ତେଲ୍‌ଗୁ ଚୋଡ଼ ଲେଫ୍‌ଟେନାଣ୍ଟ ଯଶୋରାଜ—୧ମ କୋଶଳ ଅଧିକାର କଲେ । ସୁବର୍ଣ୍ଣପୁର (ସୋନପୁର)କୁ ତେଲ୍‌ଗୁ ଚୋଡ଼ମାନେ ଉପରାଜଧାନୀ କରି ଯଶୋରାଜ—୧ମ, ସୋମେଶ୍ୱର—୧ମ, ଯଶୋରାଜ ୨ୟ, ସୋମେଶ୍ୱର-୨ୟ, ଯଶୋରାଜ—୩ୟ ଏବଂ ସୋମେଶ୍ୱର—୩ୟ ଦକ୍ଷିଣ କୋଶଳ ଶାସନ କରିଥିଲେ । କଲଚୁରିମାନେ ତାହାଙ୍କର ତୁମ୍ମାନଠାରେ ଉପରାଜଧାନୀ କରି ତାଙ୍କର ଶକ୍ତି ବୃଦ୍ଧି କଲେ । କଲଚୁରି ଏବଂ ତେଲ୍‌ଗୁଚୋଡ଼ ମଧ୍ୟରେ ଯୁଦ୍ଧ ଲାଗି କଲଚୁରି ରାଜା ଜାଜ୍ଜଲଦେବ ସୁବର୍ଣ୍ଣପୁରର ସୋମେଶ୍ୱରଦେବ—୩ୟ

(ଭୁଜବଳ)ଙ୍କୁ ଖ୍ରୀଷ୍ଟୀୟ ୧୯୧୯ ମସିହାରେ ପରାସ୍ତ କରି ଦକ୍ଷିଣ କୋଶଳ ଅଧିକାର କରିଥିଲେ ।

## ଗଙ୍ଗବଂଶ—

ଗଙ୍ଗ ବଂଶର ଅନନ୍ତ ବର୍ମ୍ମା ଚୋଡ଼ଗଙ୍ଗଦେବ ଖ୍ରୀଷ୍ଟୀୟ ୧୧୧୨ରେ ଉତ୍କଳ ଜୟ କରି ଉତ୍କଳରାଜାଙ୍କୁ ରାଜ୍ୟରେ ପୁନଃ ପ୍ରତିଷ୍ଠା କରିଥିଲେ । ❋ ଲିଙ୍ଗରାଜମନ୍ଦିର ଶିଳା ଲିପିରୁ ଜଣାପଡ଼େ ସେ ଉତ୍କଳ ଜୟ କରି ପ୍ରତ୍ୟକ୍ଷ ଭାବରେ ଉତ୍କଳର ଅଧୀଶ୍ୱର ହୋଇଥିଲେ ।

ଡଃ ମହତାବ ଢେଙ୍କାନାଳର କଟିଳାସ ପାହାଡ଼ର ଚନ୍ଦ୍ରକେଶରୀ ନାମକ ଏକ ରାଜାଙ୍କର ଶିଳା ଲିପିରୁ ଅନୁମାନ କରନ୍ତି ଯେ, ସେହି ସମୟରେ କେଶରୀ ବଂଶର ରାଜାମାନେ ଗଙ୍ଗବଂଶର ଅଧିନତା ସ୍ୱୀକାର କରି ଉତ୍କଳର ବିଭିନ୍ନ ସ୍ଥାନରେ ଶାସନ କରୁଥିଲେ । ସେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ଜୟ କରି ତାଙ୍କର ରାଜଧାନୀ କଳିଙ୍ଗ ନଗରରୁ କଟକକୁ ଉଠାଇ ଆଣିଥିଲେ ମଧ୍ୟ ସୋନପୁର କୋଶଳ ଅଞ୍ଚଳ କଲଚୁରୀ ବା ହୈହୟ ରାଜ ବଂଶ ଅଧୀନରେ ଥିଲା । ଓଡ଼ିଶାର ପଶ୍ଚିମାଞ୍ଚଳ ଉପରେ ଆଧିପତ୍ୟ ନେଇ ଗଙ୍ଗ ଓ କଳାଚୁରୀ ବଂଶର ବିବାଦ ବହୁଦିନ ଚାଲିଥିଲା ।

କଟକ ଜିଲ୍ଲା ଅନ୍ତର୍ଗତ ପଦ୍ମପୁର ପ୍ରଗନାସ୍ଥ କୃଷ୍ଣପୁର ଗ୍ରାମରେ ଯେଉଁ ଚଟେଶ୍ୱର ମନ୍ଦିର ଅଛି, ତତ୍ ସଂଲଗ୍ନ ଶିଳାଲିପିରୁ ଜଣାଯାଏ ଉକ୍ତ ମନ୍ଦିର ଅନଙ୍ଗଭୀମ ଦେବଙ୍କ ଦ୍ୱାରା ଖ୍ରୀ: ୧୨୨୦ରେ ନିର୍ମିତ ହୋଇଥିଲା ଏବଂ ତାଙ୍କର ଜଣେ ସେନାପତି ବିଷ୍ଣୁ, ତୁମ୍ମନା (ରତନପୁର)ର କଲଚୁରୀ ବଂଶର ରାଜାଙ୍କୁ ବିନ୍ଧ୍ୟ ପର୍ବତ ତଳେ ଭୀମନଦୀ ତଟରେ ପରାସ୍ତ କରି ପଶ୍ଚିମ ଓଡ଼ିଶା ତଥା କୋଶଳ ଅଧିକାର କରିଥିଲେ । ବଣେଇ ଏବଂ ଗାଙ୍ଗପୁରକୁ ଛୋଟ ଛୋଟ କରଦ ରାଜ୍ୟ ରୂପେ ଜଣେ ଜଣେ ଶାସକଙ୍କ ଦ୍ୱାରା ଶାସନ କରୁଥିଲେ । ବର୍ତ୍ତମାନ ଗାଙ୍ଗପୁର ଅଞ୍ଚଳର ଲୋକ-ମାନଙ୍କ ମୁଖରୁ ଶୁଣିବାକୁ ମିଳେ ଯେ ହେମଗିରିର ଯୁନାଗଡ଼, ବେଲସରଗଡ଼

---

❋ ୧୧୧୨ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବଙ୍କ ପ୍ରଦତ୍ତ କୋର୍ଣ୍ଣୀ ତାମ୍ର ଶାସନ—ଓଡ଼ିଶାର ଇତିହାସ ଡଃ ହରେକୃଷ୍ଣ ମହତାବ ।

ମଣାବବଗଡ ପ୍ରଭୃତି ସ୍ଥାନରେ କେଶରୀ ବଂଶର ରାଜାମାନେ ରାଜ୍ୟଶାସନ କରୁଥିଲେ । ଏହାପରେ ୧୭ ଜଣ ରାଜା ଶାସନ କରୁଥିବାର ଜଣାଯାଏ । ଏହି କେଶରୀ ବଂଶ ବିଷୟରେ କର୍ଣ୍ଣେଲ୍ ଡାଲଟନ୍ ଏବଂ ହଣ୍ଟର ମଧ୍ୟ ସୂଚାଇଛନ୍ତି ★ କେଶରୀ ବଂଶର ଅତ୍ୟାଚାରୀ ଶେଷ ଶାସକ ରାଜାଦେଓ କେଶରୀଙ୍କୁ ବଶିଷ୍ଟ ଭୂୟାଁ ନେତା ମଦନ ପ୍ରଧାନ ହତ୍ୟା କରିଥିଲେ । ଗଙ୍ଗବଂଶ ଦ୍ୱାରା ପରାସ୍ତ ହୋଇ ଏମାନେ ଏଠାରେ କରଦରାଜା ରୂପେ ଶାସନ କରୁଥିଲେ ।

## ଚୌହାନ ବଂଶ—

ଚୌହାନ ବଂଶର ରାଜା ରମାଇ ଦେବ ବଲାଙ୍ଗିରର ପାଟଣା ଗଡ଼ଠାରେ ଚୌହାନବଂଶ ଖ୍ରୀ. ୧୩୬୦ ପ୍ରତିଷ୍ଠା କରିଥିଲେ । ଏହି ବଂଶର ରାଜା ନରସିଂହ ଦେବ (ଖ୍ରୀ.୧୫୬୮-୧୫୭୫)ଙ୍କ ସମୟରେ ତାଙ୍କର ସାନଭାଇ ବଳରାମଦେବ ଅଙ୍ଗନଦୀର ଉତ୍ତରପଟରେ କଲଚୁରୀ ରାଜା କଲ୍ୟାଣ ସହାୟଙ୍କ ରାଜ୍ୟ ମଧ୍ୟରେ ଏକ ଅର୍ଦ୍ଧ-ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କରିଥିଲେ । ଏହାର ରାଜଧାନୀ ବରଗଡ଼ ଠାରେ ଥିଲା ଏବଂ ପରେ ମହାନଦୀର ଉତ୍ତରତୀରରେ ସମ୍ବଲପୁରକୁ ଉଠାଇ ନେଲେ । ରତନପୁରର କଲଚୁରୀ ରାଜା କଲ୍ୟାଣ ସହାୟଙ୍କର ଖ୍ରୀ. ୧୫୮୦ରେ ମୃତ୍ୟୁହେଲା ପରେ ରାଜ୍ୟ ଦୁର୍ବଳ ହୋଇଗଲା । ଏହାର ସୁଯୋଗ ନେଇ ବଳରାମଦେବ କଲଚୁରୀ ରାଜା ଲକ୍ଷ୍ମଣ ସହାୟଙ୍କୁ ପରାସ୍ତ କରି ସାରଙ୍ଗ ଗଡ଼, ରାୟଗଡ ଓ ଶକ୍ତି ସମ୍ବଲପୁରର ରାଜ୍ୟରେ ମିଶାଇଥିଲେ । ଗଙ୍ଗ ରାଜ୍ୟ ବାମଣ୍ଡାକୁ ଜୟ କରି ସେଠାରେ ରାମଚନ୍ଦ୍ର ଦେବଙ୍କୁ କରଦ ରାଜା ରୂପେ ଅଧିଷ୍ଠିତ କରିଥିଲେ । ଗାଙ୍ଗପୁର ରାଜା ତାଙ୍କର କନ୍ୟା କମଳ କୁମାରୀଙ୍କୁ ବଳରାମଦେବ ସହିତ ବିବାହ ଦେଇ ସମ୍ବଲପୁର ରାଜାଙ୍କ ବଶ୍ୟତା ସ୍ୱୀକାର କଲେ । ସରଗୁଜା ରାଜାଙ୍କ ସହିତ ବିରୋଧ ହେବାରୁ ବଳରାମ ଦେବ ଗାଙ୍ଗପୁର ମଧ୍ୟଦେଇ ସରଗୁଜା ଅଧିକାର କଲେ । ସରଗୁଜା ରାଜକନ୍ୟାଙ୍କୁ ଅନ୍ୟ ଏକ ରାଣୀ ରୂପେ ପାଇଲେ ଏବଂ ସେଠାରୁ ଅନନ୍ତଶୟନ ମୂର୍ତ୍ତି ପୁରସ୍କାର ସ୍ୱରୂପେ ଆଣି ସମ୍ବଲପୁର ଠାରେ ପ୍ରତିଷ୍ଠା କଲେ । ସେହି ବଂଶର ରାଜା ବଳିଆର ଦେବ (୧୬୫୦-୧୬୮୮) ବଣେଇ ଓ ଯମରଟାଙ୍ଗୀ (ପମ୍‌ଗର୍ଭି

★ Orissa District Gazetteer—Sundargarh—P. 54.

ମଣ୍ଡଳ) ★ ଅଧିକାର କରିଥିଲେ । ବଳରାମ ଦେବ ଅଠର ଗଡ଼ର ମଉଡ଼-ମଣି ବୋଲି ଆଖ୍ୟା ପାଇଥିଲେ । ଏହି ଅଠରଗଡ଼ ହେଲା—୧-ସମ୍ବଲପୁର, ୨-ପାଟଣା, ୩-ସୋନପୁର, ୪-ଖଡ଼ିଆଳ, ୫-ବୌଦ, ୬-ଆଠମଲ୍ଲିକ, ୭-ରେଢାଖୋଲ, ୮-ବାମଣ୍ଡା, ୯-ବଣେଇ, ୧୦-ଗାଙ୍ଗପୁର, ୧୧-ରାୟଗଡ଼ା, ୧୨-ସାରଙ୍ଗଡ଼, ୧୩-ସରଗୁଜା, ୧୪-ବିନ୍ଦ୍ରା-ନୂଆଗଡ଼, ୧୫-ଶକ୍ତି, ୧୬-ଫୁଲ-ଝର, ୧୭-ବସ୍ତର, ୧୮-ଯମଡ଼ାଙ୍ଗୀ । ଏହି ଅଠର ଗଡ଼ ମଧ୍ୟରୁ ସୁନ୍ଦରଗଡ଼ ଗେଜେଟିୟରରେ ★ ସରଗୁଜା, ବସ୍ତର ଓ ଯମଡ଼ାଙ୍ଗୀ ପରିବର୍ତ୍ତେ ବରଗଡ଼, ଚନ୍ଦ୍ରପୁର ଓ ବୋଡ଼ାସମ୍ବର ବୋଲି ଉଲ୍ଲେଖ ଅଛି । ସମ୍ବଲପୁର ଇତିହାସ ଲେଖକ ଶିବ ପ୍ରସାଦ ଦାଶ ଖଡ଼ିଆଳ, ସମ୍ବଲପୁର ଓ ଯମଡ଼ାଙ୍ଗୀ ପରିବର୍ତ୍ତେ ବୋଡ଼ାସମ୍ବର, ବରଗଡ଼ ଓ ପାଲଲହଡ଼ା ଉଲ୍ଲେଖ କରିଛନ୍ତି । ବେଦବ୍ୟାସ ଅଞ୍ଚଳର ଗାଙ୍ଗପୁର ଓ ବଣେଇ ଅର୍ଥାତ୍ ଆଧୁନିକ ସୁନ୍ଦରଗଡ଼ ଜିଲ୍ଲା ଖ୍ରୀ ୧୮୧୮ ପର୍ଯ୍ୟନ୍ତ ଚୌହାନ ରାଜ୍ୟ ଅଧୀନରେ ରହିଥିଲା ।

## ମରହଟ୍ଟା, ମୋଗଲ ଶାସନ—

ଖ୍ରୀ. ୧୫୯୬ ଠାରୁ ରତନପୁରର ହୈହୟରାଜା ମୋଗଲ ବାଦ-ଶାହଙ୍କ ଅଧୀନତା ସ୍ୱୀକାର କରିଥିଲେ । ମରହଟ୍ଟା ଶାସକ ଭାସ୍କରରାମ ଖ୍ରୀ. ୧୬୪୪ରେ ହୈହୟ ରାଜା ରଘୁନାଥ ସିଂହଙ୍କୁ ପରାସ୍ତ କରି ରତନପୁର ଅଧିକାର କରିଥିଲେ । ଏହା ଫଳରେ ମଧ୍ୟ ପ୍ରଦେଶର ଛତିଶ ଗଡ଼ ଅଞ୍ଚଳ ନାଗପୁର (ବେରାର) ର ମରହଟ୍ଟା ଶାସକଙ୍କ ଅଧିନକୁ ଆସିଗଲା ।

ଖ୍ରୀ. ୧୭୫୧ ରେ ମରହଟ୍ଟା ମାନଙ୍କ ସହିତ ବଙ୍ଗର ଶାସକ ଆଲି-ବର୍ଦ୍ଦି ଖାଁ ଙ୍କର ଯେଉଁ ସନ୍ଧିଚୁକ୍ତି ହେଲା ସେଥିରେ ସୁବର୍ଣ୍ଣ ରେଖାର ଦକ୍ଷିଣ ପଟ ଓଡ଼ିଶା ନାଗପୁରର ମରହଟ୍ଟା ଶାସକଙ୍କ ହାତକୁ ଗଲା । ରତନପୁର ଓ କଟକ ମଧ୍ୟରେ ଅବସ୍ଥିତ ସମ୍ବଲପୁରର ଚୌହାନ ରାଜ୍ୟ ମଧ୍ୟରେ ମରହଟ୍ଟା ମାନେ ପଶିପାରି ନଥିଲେ । ଏହା ସମ୍ବଲପୁର ରାଜାଙ୍କ ଅଧିନରେ ଗାଙ୍ଗପୁର ବଣେଇ, ସୋନପୁର, ବୌଦ ପ୍ରଭୃତି ରାଜ୍ୟ କରଦ ରାଜ୍ୟ ରୂପେ ରହିଆସିଥିଲା ।

---

★ Chauhans rule in western Orissa__ Dr. J. K Sahu
New Aspects of History of orissa
★ Gazetteer of India, Orissa, Sundargarh__P.-57

ସମ୍ବଲପୁରର ରାଜା ଜୟନ୍ତ ସିଂହଙ୍କ ସମୟରେ ମରହଟ୍ଟାମାନେ ରାଜ୍ୟରେ ଲୁଣ୍ଠତରାଜ ଆରମ୍ଭ କରିଦେଲେ । ଶେଷରେ ଖ୍ରୀ. ୧୭୯୩ ରେ ଜୟନ୍ତ ସିଂହ ମରହଟ୍ଟା ମାନଙ୍କ ସହିତ ଶାନ୍ତି ଚୁକ୍ତିରେ ଆବଦ୍ଧ ହୋଇ ବାର୍ଷିକ ୩୨୦୦୦ ସମ୍ବଲପୁରୀ ମୁଦ୍ରା (୧୬୦୦୦ ରୌପ୍ୟମୁଦ୍ରା) ଦେବାକୁ ରାଜିହେଲେ । ଏହା ଖ୍ରୀ. ୧୮୦୦ ପର୍ଯ୍ୟନ୍ତ ଚାଲି ଆସିଲା । ନାଗପୁରର ରାଜା ରଘୁଜୀଙ୍କ ଭାଇ ଭଙ୍କୋଜୀ ଭୋସଁଲା ତୀର୍ଥ ଯାତ୍ରାକରି ପୁରୀଯିବା ବାଟରେ ସମ୍ବଲପୁରର ଦେଓ୍ୱାନ ଅଭ୍ୟର୍ଥନା ନକରିବାରୁ କଟକରୁ ଭୂପସିଂହଙ୍କ ନେତୃତ୍ୱରେ ସୈନ୍ୟ ପଠାଇ ସମ୍ବଲପୁରକୁ ଅଧିକାର କରିନେଲେ । ଭୂପସିଂହ ସମ୍ବଲପୁର, ବୌଦ ଓ ସୋନପୁର ରାଜାଙ୍କୁ ବନ୍ଦୀକରି ଚନ୍ଦାକୁ ପଠାଇଦେଲେ । ଭୂପସିଂହ ଏବଂ ପରେ ତାନ୍ତିଆ ଫଡ଼ନଭିସ ସମ୍ବଲପୁରର ଗଭର୍ଣ୍ଣର ହୋଇ ଶାସନ ଚଳାଇଲେ ।

## ବ୍ରିଟିଶ୍ ଶାସନ—

ଜର୍ଜ ହାରକୋର୍ଟ୍ ଖ୍ରୀ. ୧୮୩୦ ଅକ୍ଟୋବର ୧୪ ତାରିଖରେ ବାରବାଟୀ ଦୁର୍ଗ ଅଧିକାର କଲେ । କଟକ ବ୍ରିଟିଶ୍ ସରକାରଙ୍କର ଏକ ସୁବା ହୋଇ ରହିଲା ମେଜର ବ୍ରାଉଟନ୍ ଖ୍ରୀ ୧୮୦୪ ଜାନୁୟାରୀ ୨ ତାରିଖରେ ସମ୍ବଲପୁର ଅଧିକାର କଲେ ।

ବଣେଇ ଓ ଗାଙ୍ଗପୁର ରଘୁଜୀଭୋସଁଲା ଓ ବ୍ରିଟିଶଙ୍କ ମଧ୍ୟରେ ହୋଇଥିବା ଚୁକ୍ତି ଅନୁସାରେ ଖ୍ରୀ. ୧୮୦୬ ମସିହାରେ ମରହଟ୍ଟା ମାନଙ୍କ ଅଧିନରେ ଖ୍ରୀ ୧୮୧୮ ପର୍ଯ୍ୟନ୍ତ ରହିଲା ।

ମାଧୋଜୀ ଭୋସଁଲା ( ଆପାସାହେବ ) ଓ ବ୍ରିଟିଶ ସରକାରଙ୍କ ଖ୍ରୀ. ୧୮୧୮ ଚୁକ୍ତି ଅନୁସାରେ ବଣେଇ ଓ ଗାଙ୍ଗପୁର ବ୍ରିଟିଶ ସରକାରଙ୍କ ଅଧିନକୁ ଆସିଲା । ଖ୍ରୀ. ୧୮୨୮ ରେ ବଣେଇ ଓ ଗାଙ୍ଗପୁରକୁ ସମ୍ବଲପୁରରୁ ଅଲଗା କରି ଅଲଗା ଅଲଗା ସନନ୍ଦ ଦେଲେ ଏବଂ ଖ୍ରୀ. ୧୮୨୬ ଚୁକ୍ତି ଅନୁସାରେ ପରିଶେଷରେ ଏହା ବ୍ରିଟିଶ୍ ସରକାରଙ୍କ ଅଧିନରେ ରହିଲା । ଏହି ଅଞ୍ଚଳରେ କୋହ୍ଲମେଳି (ଖ୍ରୀ. ୧୮୩୧-୩୩) ଠାରେ ଏକ ନୂତନ ରାଜ୍ୟ ସାଉଥଓ୍ୱେଷ୍ଟର୍ଣ୍ଣ ଫ୍ରଣ୍ଟୟର ଏଜେନସି (South Western Front Agency) ଗଠିତ ହୋଇ ବଣେଇ ଗାଙ୍ଗପୁର ତାର ଅଧିନରେ ରହିଲା । ଗଭର୍ଣ୍ଣର ଜେନେରାଲଙ୍କର ଜଣେ ଏଜେଣ୍ଟ ଏହାକୁ ଶାସନ କଲେ ।

ଖ୍ରୀ. ୧୮୭୪ ରେ ଏହି ରାଜ୍ୟର ନାମ ଦକ୍ଷିଣ ପଶ୍ଚିମ ଫ୍ରଣ୍ଟିୟର ଏଜେନ୍‌ସିରୁ ଛୋଟ ନାଗପୁରକୁ ବଦଳାଇ ଲେଫଟେନାଣ୍ଟ ଗଭର୍ଣ୍ଣର ବେଙ୍ଗଲ ଅଧିନରେ ରଖାଗଲା ଏବଂ ଏହାର ଶାସକ ଗଭର୍ଣ୍ଣର ଜେନେରାଲଙ୍କର 'ଏଜେଣ୍ଟ' ନାମ ପରିବର୍ତ୍ତେ କମିଶନର ପାହ୍ୟାକୁ ଉନ୍ନୀତ କରାଗଲା ।

ଖ୍ରୀ. ୧୮୬୦ ରେ ସମ୍ବଲପୁର (ବଣେଇ ଓ ଗାଙ୍ଗପୁର ବ୍ୟତୀତ) କଟକର ସୁପରିଣ୍ଟେଣ୍ଡେଣ୍ଟ ଅଫ ଟ୍ରିବୁଟାରି ମହାଲରେ ରହିଲା ଏବଂ ଖ୍ରୀ. ୧୮୬୨ ଏପ୍ରିଲ ୩୦ ତାରିଖରୁ ସେଣ୍ଟ୍ରାଲ ପ୍ରୋଭିନ୍‌ସରେ ମିଶିଲା ।

ଖ୍ରୀ. ୧୯୦୫ ଅକ୍ଟୋବର ୭ ତାରିଖରୁ ବଣେଇ ଓ ଗାଙ୍ଗପୁର ଛୋଟନାଗପୁରରୁ ଓଡ଼ିଶା କମିଶନରଙ୍କ ଅଧିନକୁ ଆସିଲା । ଏହି ସମୟରୁ ଶରେଇକଳା ଓ ଖରସୁଆଁ ଗଡ଼ଜାତ ରାଜ୍ୟ ଦୁଇଟି ଓଡ଼ିଶା ଡିଭିଜନରେ ମିଶିଲା । ❋ ସରଗୁଜା ପ୍ରଭୃତି କେତେକ ରାଜ୍ୟ ମଧ୍ୟ ପ୍ରଦେଶରେ ରହିଲା ।

ଖ୍ରୀ. ୧୯୧୨ ରେ ବିହାର-ଓଡ଼ିଶା ରାଜ୍ୟ ଗଠିତ ହୋଇ ତାର ରାଜଧାନୀ ପାଟଣା ଠାରେ ରହିଲା । ଖ୍ରୀ: ୧୯୩୩ରେ ନୂତନ ସନନ୍ଦ ଅନୁସାରେ ଓଡ଼ିଶାର ପଲିଟିକାଲ୍ ଏଜେଣ୍ଟଙ୍କ ଅଧିନରେ ବେଦବ୍ୟାସ ଅଞ୍ଚଳ ରହିଲା । ୧୯୪୭ ଅଗଷ୍ଟ ୧୫ରୁ ସ୍ୱାଧିନ ଭାରତର ସରକାରଙ୍କର ଓଡ଼ିଶା ରାଜ୍ୟ ଅଧିନରେ ବେଦବ୍ୟାସ ଅଞ୍ଚଳଟି ଆଧୁନିକ ସୁନ୍ଦରଗଡ଼ ଜିଲ୍ଲାରେ ରହିଆସୁଛି ।

---

❋ ଗଡ଼ଜାତ— ସ୍ମାରକୀ ସଂକଳନ— ୯୮୬
ସମ୍ପାଦକ— ଭଗୀରଥି ନେପାକ





ଚିତ୍ର ନଂ ୯ : ବ୍ୟାସଗୁମ୍ଫା



ଚିତ୍ର ନଂ ୧୦ : ବେଦଭବନ ଗୁରୁକୁଳ ଆଶ୍ରମ



ଚିତ୍ର ନଂ ୧୧ : ବାଲୁଙ୍କେଶ୍ୱର ଶିବ



ଚିତ୍ର ନଂ ୧୬ : ଶୁଖାବନ୍ଧ ଶିବମନ୍ଦିର

# ଏକାଦଶ ପରିଚ୍ଛେଦ

## ଦର୍ଶନୀୟ ସ୍ଥାନ ବେଦବ୍ୟାସ—

ଆମ ଭାରତର ସାଂସ୍କୃତିକ ସମନ୍ୱୟ ପାଇଁ ଯେଉଁ ମହାପୁରୁଷମାନଙ୍କର ଅବଦାନ ରହିଛି ସେମାନେ ହେଲେ କାରୁଣିକ ଦାଶରଥି ରାମ, କୃଷ୍ଣ, ଦ୍ୱୈପାୟନବ୍ୟାସ, ପୁରୁଷୋତ୍ତମ ବାସୁଦେବ ଓ ପରମ କାରୁଣିକ ଗୌତମ ବୁଦ୍ଧ । ମହର୍ଷି କୃଷ୍ଣ ଦ୍ୱୈପାୟନ କୃଷ୍ଣ ହେଉଛନ୍ତି ବେଦବ୍ୟାସ । ପ୍ରତ୍ୟେକ ଭାରତୀୟ ତାର ସଂକଳ୍ପ ବାକ୍ୟରେ "ଗଙ୍ଗେଚ ଯମୁନେଚୈବ ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ ସନ୍ନିଧିଂକୁରୁ ॥ ଏହି ମନ୍ତ୍ର ଉଚ୍ଚାରଣ କରେ । ଗଙ୍ଗା, ଯମୁନା, ସରସ୍ୱତୀ, ସିନ୍ଧୁ, କାବେରୀ ଓ ଗୋଦାବରୀ ପ୍ରତ୍ୟେକ ନିଜ ନିଜର ସଂସ୍କୃତିରେ ମହୀୟସୀ । ସରସ୍ୱତୀ ନଦୀ କୂଳରେ ବୈଦିକ ସନ୍ତାନ ମାନେ ପ୍ରାକୃତିକ ଶୋଭା ସ୍ନିଗ୍ଧତାରେ ପ୍ରମୁଗ୍ଧ ହେଉଥିବେବେଳେ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ପ୍ରତିଷ୍ଠିତ ଗୁରୁକୁଳ ବୈଦିକ ଆଶ୍ରମର ବୈଦିକ ସନ୍ତାନ ମାନେ ଏହି ବେଦବ୍ୟାସର ଶଙ୍ଖ, କୋଇଲ ଓ ସରସ୍ୱତୀର ତ୍ରିବେଣୀ ସଙ୍ଗମ ସ୍ଥଳରେ ପ୍ରାକୃତିକ ଭବ୍ୟତାକୁ ଋଷିସତ୍ତ୍ୱରେ ରୂପାୟନକରି ବେଦର ସ୍ତୁତି ଗାନ କରୁଛନ୍ତି ।

## ବ୍ୟାସଗୁମ୍ଫା ଓ ଅନ୍ୟାନ୍ୟ ମନ୍ଦିର—

ଶଙ୍ଖ ଓ କୋଇଲର ପବିତ୍ର ସଙ୍ଗମ ସ୍ଥଳର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ମନ୍ଦିର ସମୂହ, ନିର୍ଝର, ପାହାଡ଼ର ଗୁମ୍ଫା, ନଦୀ କୂଳକୁ ଲାଗିଥିବା ପାହାଚ ଶ୍ରେଣୀରେ ଝାମ୍ପ ଦେଉଥିବା ତଟିନୀର ଊର୍ମିମାଳାର ଅପୂର୍ବ ଦୃଶ୍ୟ ଦର୍ଶକର ସୌନ୍ଦର୍ଯ୍ୟ ପିପାସୁ ମନକୁ ହରଣ କରିନିଏ । ଏହି ପାହାଡ଼ ଉପରେ ତିନୋଟି ପ୍ରଧାନ ମନ୍ଦିର ମଧ୍ୟରୁ ଗୋଟିଏ ଚନ୍ଦ୍ରଶେଖର ଶିବଙ୍କ ମନ୍ଦିର ଓ ଅନ୍ୟ ଗୋଟିଏ ବାଲୁଙ୍କେଶ୍ୱର ଶିବ ମନ୍ଦିର । ନଦୀ କୂଳନିକଟସ୍ଥ ଅନ୍ୟଏକ ମନ୍ଦିର

ରାମଙ୍କ ପାଇଁ ଉଦ୍ଦିଷ୍ଟ ଏଠାରେ ରାମ, ଲକ୍ଷ୍ମଣ, ସୀତାଦେବୀ ଅଧିଷ୍ଠାତ୍ରୀ ଦେବତା । ଦକ୍ଷିଣ ପାର୍ଶ୍ୱରେ ରାମଭକ୍ତ ହନୁମାନଙ୍କ ମୂର୍ତ୍ତି ପୂଜା ପାଉଛନ୍ତି ।

ଏହି ନଦୀ ସଙ୍ଗମ ସ୍ଥଳକୁ ଲାଗିଥିବା ପାହାଡ଼ର ନାମ "ପରାଶର ଘୁଟୁକୁରା ।" ଏହି ପାହାଡ଼ ଉପରକୁ ଏକ ଗୁମ୍ଫା ଅଛି, ଯେଉଁଠାରେ କୃଷ୍ଣଦ୍ୱୈପାୟନ 'ବେଦବ୍ୟାସ'ଙ୍କ ଲେଖନୀରୁ ଝରି ଆସିଥିଲା ସଂସ୍କୃତର ଆଦି ଝର, ଏ ଜାତିର ଆଦିକାବ୍ୟ 'ମହାଭାରତ' । ଏହିଠାରେ ହଜାର ହଜାର ଦର୍ଶକ ପବିତ୍ର ନଦୀ ସଙ୍ଗମରେ ସ୍ନାନ ସାରି ପ୍ରଣିପାତ କରିଥାନ୍ତି । ବେଦବ୍ୟାସର ଚନ୍ଦ୍ରଶେଖର ଶିବ ଓ ବାଲୁଙ୍କେଶ୍ୱର ଶିବଙ୍କ ମନ୍ଦିର ପ୍ରାଙ୍ଗଣରେ ପ୍ରତ୍ୟେକ ସୋମବାର ଦିନ ଭକ୍ତମାନେ ପ୍ରବଳ ଭିଡ଼ ମଧ୍ୟରେ ଠାକୁର ଦର୍ଶନ କରିଥାନ୍ତି । ଏଠାରେ ପ୍ରତିବର୍ଷ ଶିବରାତ୍ରୀ ସମୟରେ ଏକ ସପ୍ତାହ ବ୍ୟାପି ବେଦବ୍ୟାସ ମେଳା ଅନୁଷ୍ଠିତ ହୁଏ । ଏହି ମେଳାରେ ଭାରତର ବିଭିନ୍ନ ସ୍ଥାନରୁ ବିଶେଷତଃ ବିହାର, ମଧ୍ୟପ୍ରଦେଶ ଏବଂ ଓଡ଼ିଶାର ଉତ୍ତର ପଶ୍ଚିମାଞ୍ଚଳର ହଜାର ହଜାର ଯାତ୍ରୀ ପବିତ୍ର ଶଙ୍ଖ କୋଇଲର ସଙ୍ଗମ ସ୍ଥାନରେ ବୁଡ଼ପକାଇ ଜାଗରଜାଳି ଶିବରାତ୍ରୀରେ ଉଜାଗର ରହିଥାନ୍ତି । ଶିବ ମନ୍ଦିରରେ ମହାଦୀପ ରାତ୍ରୀ ଭରି ଜଳୁଥାଏ । ମନ୍ଦିରର ପୂଜାରୀ ପ୍ରଭାତ ପୂର୍ବରୁ ମହାଦୀପ ମନ୍ଦିର ଉପରକୁ ଉଠାଇ ଭକ୍ତମାନଙ୍କୁ ରାତ୍ରୀ ଶେଷ ହୋଇଥିବା ସଙ୍କେତ ଦିଏ । ଭକ୍ତମାନେ ଠାକୁର ଦର୍ଶନ କରିଥାନ୍ତି । ଶିବ ରାତ୍ରୀ ଆର୍ଯ୍ୟ ସମାଜର ଏକ ପବିତ୍ର ଦିବସ ହୋଇଥିବାରୁ ଏଠାରେ ପ୍ରତିଷ୍ଠିତ ଗୁରୁକୁଳ ବୈଦିକ ଆଶ୍ରମର ବାର୍ଷିକ ଉତ୍ସବ ଏହି ଅବସରରେ ପାଳିତ ହୋଇ ବେଦବ୍ୟାସ ଅଞ୍ଚଳଟିକୁ ମୁଖରିତ କରିଥାଏ ।

## ସରସ୍ୱତୀ କୁଣ୍ଡ—

ଗଙ୍ଗା ଯମୁନା ଓ ସରସ୍ୱତୀର ମିଳନସ୍ଥଳୀ ପ୍ରୟାଗତୀର୍ଥ ପ୍ରତ୍ୟେକ ଭାରତୀୟଙ୍କ ପକ୍ଷେ ଯେପରି ପବିତ୍ର ଶଙ୍ଖ, କୋଇଲ ଓ ସରସ୍ୱତୀର ମିଳନସ୍ଥଳୀ ବେଦବ୍ୟାସ ତୀର୍ଥ ଠିକ୍ ସେହିପରି ପବିତ୍ର । ଏହି ତୀର୍ଥର ସମସ୍ତ ଜଳରୁ ହିଁ ବ୍ରାହ୍ମଣୀ ନଦୀର ଜନ୍ମ । କୃଷ୍ଣାଙ୍ଗୀ ଯମୁନା ଓ ଶୁଭ୍ରାଙ୍ଗୀ ଗଙ୍ଗାର ସମ୍ମେଳନରେ ତୀର୍ଥରାଜ ପ୍ରୟାଗ ଋଦ୍ଧିମନ୍ତ ହେଲାପରି କୃଷ୍ଣାଙ୍ଗୀ କୋଇଲ ଓ ଶୁଭ୍ରାଙ୍ଗୀ ଶଙ୍ଖର ସମ୍ମେଳନରେ ବେଦବ୍ୟାସ ତୀର୍ଥ ଆଜି ଋଦ୍ଧିମନ୍ତ । ପ୍ରୟାଗଠାରେ ସରସ୍ୱତୀ

ଅନ୍ତଃସଲିଳା ରୂପେ ମିଳିତ ହୋଇଛି କିନ୍ତୁ ଏହି କ୍ଷେତ୍ରରେ ସରସ୍ୱତୀ ନଦୀ ଆତ୍ମଗୋପନ କରି ଦକ୍ଷିଣ ପାର୍ଶ୍ୱ ପାହାଡ଼ର ପାଦ ଦେଶରେ ଏକ କୁଣ୍ଡପରି ସ୍ଥାନରୁ ବାହାରି ଏହି ପବିତ୍ର ସଙ୍ଗମ ସ୍ଥଳରେ ମିଳିତ ହୋଇଛି ।

'ସରସ୍ୱତୀ' ଶବ୍ଦର ଅଭିଧା ଅର୍ଥ ହେଉଛି ଜଳପୂର୍ଣ୍ଣା । ବେଦବ୍ୟାସର ତୀର୍ଥର ସରସ୍ୱତୀଙ୍କର ବିଶେଷତ୍ୱ ହେଲା ଏହାର ଜଳ ମଧୁର ଓ ବର୍ଷସାରା ସ୍ୱଚ୍ଛ ରହେ ଏବଂ ନିର୍ଝରର ନୀର ସବୁ ସମୟରେ ସମାନ ରହିଥାଏ । ନଦୀ-ମାତୃକ ଆର୍ଯ୍ୟମାନେ ସରସ୍ୱତୀ ନଦୀକୁ ଜ୍ଞାନ ଓ ବିଦ୍ୟାର ଜନୟିତ୍ରୀ ରୂପେ କଳ୍ପନା କରି ଆସିଛନ୍ତି ।

## ଗୁରୁକୁଳ ବୈଦିକ ଆଶ୍ରମ—

ବେଦବ୍ୟାସର ପବିତ୍ର ସଙ୍ଗମ କ୍ଷେତ୍ରରେ ପ୍ରୀତହୋଇ ଆର୍ଯ୍ୟ ସମାଜର ପୂଜ୍ୟ ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ଏଠାରେ ଏକ ଗୁରୁକୁଳ ବୈଦିକ ଆଶ୍ରମ ପ୍ରତିଷ୍ଠା କରିବାକୁ ସ୍ଥିର କରିଥିଲେ । ବୈଦିକ ସଂସ୍କୃତି ପରମ୍ପରା ରକ୍ଷା କରି ସ୍ୱାମୀଜୀଙ୍କ ମହା ମହିମ ଆଚାର୍ଯ୍ୟ ତଥା ତତ୍କାଳୀନ ଆର୍ଯ୍ୟ ପ୍ରତିନିଧି ସ୍ୱାମୀ ଅଭେଦାନନ୍ଦଙ୍କ ପ୍ରେରଣାରେ ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କ ସ୍ୱପ୍ନକୁ ବାସ୍ତବରେ ପରିଣତ କରିଛନ୍ତି । ଯାହା ଫଳରେ ବେଦବ୍ୟାସର ବୈଦିକ ଗୁରୁକୁଳ ଆଶ୍ରମ ଖ୍ରୀ ୧୯୫୪ ମସିହାରେ ପ୍ରତିଷ୍ଠିତ ହୋଇଛି । ଗୁରୁକୁଳର ଆଦର୍ଶ ଶିକ୍ଷାଦାନ ଓ ଶୃଙ୍ଖଳିତ ନାଗରିକ ହେବାକୁ ଯୋଗ୍ୟ ହେବା ପାଇଁ ପ୍ରତ୍ୟେକ ଭାରତୀୟ ତଥା ଏହି ଅଞ୍ଚଳର ଆଦିବାସୀ ମାନଙ୍କୁ ଉଦ୍‌ବୁଦ୍ଧ କରୁଛି । ବୈଦିକ ସଂସ୍କୃତି, ପରମ୍ପରା ବର୍ତ୍ତମାନ ପରିପ୍ରେକ୍ଷୀ ସହିତ ତାଳଦେଇ ଏହିଠାରେ ପ୍ରତିଷ୍ଠିତ ସଂସ୍କୃତ ବିଦ୍ୟାଳୟ ଉତ୍ତରୋତ୍ତର ଉନ୍ନତିରେ ଆଗେଇ ଚାଲିଛି । ଏଠାରେ ଆୟୁର୍ବେଦିକ୍ ଚିକିତ୍ସାଳୟ ଏବଂ ଏକ ବେଦଭବନ ସ୍ଥାପିତ ହୋଇଛି । ବେଦବ୍ୟାସର ଆବାସିକ ଗୁରୁକୁଳ ଆଶ୍ରମ ଯୋଗୁଁ ଗୁରୁକୁଳରେ

ଗୁରୁଶିଷ୍ୟର ସୁ-ମଧୁର ପରମ୍ପରା ଗଢ଼ି ଉଠିଛି । ଏଠାରେ ଦ୍ୱୈତଭାବ ଦୂର ହୋଇ ଏକତ୍ୱ ଭାବରେ ପରମାତ୍ମାଙ୍କ ଆଶୀର୍ବାଦ ଲାଭକରି ସଂସାରରେ ସତ୍ୟ ପ୍ରତିଷ୍ଠା ପାଇଁ ଝଙ୍କୃତ ହେଉ—

"ନଜଦଗ୍ନେ ସ୍ୟାମହଂ ତ୍ୱଂ ତ୍ୱଂ ବାଧାସ୍ୟାଅହମ୍
ସ୍ୟୁଷ୍ଟେ ସତ୍ୟା ଇହାଶିଷଃ ॥" (ଋ ୬।୩, ଅ. ୪୦ ବର୍ଗ ୨୩)

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ



# ସହାୟକ ଗ୍ରନ୍ଥସୂଚୀ


୧ । ମହାଭାରତ (ଆଦିପର୍ବ)—ଗୋବିନ୍ଦ ଚନ୍ଦ୍ର ମହାପାତ୍ର
ଓଡ଼ିଶା ସାହିତ୍ୟ ଏକାଡ଼େମୀ

୨ । ମହାଭାରତ (ହିନ୍ଦୀ) ଆଦିପର୍ବ ଏବଂ ସଭାପର୍ବ—ଗୀତାପ୍ରେସ୍, ଗୋରଖପୁର

୩ । ସାରଳା ସାହିତ୍ୟର ଐତିହାସିକ ଚିତ୍ର—ଡଃ କୃଷ୍ଣ ଚନ୍ଦ୍ର ପାଣିଗ୍ରାହୀ
ପ୍ରଜାତନ୍ତ୍ର ପ୍ରଚାର ସମିତି କଟକ

୪ । ସାରଳା ସାହିତ୍ୟ ପରିକ୍ରମା—ସୁରେନ୍ଦ୍ର କୁମାର ମହାରଣା

୫ । ସାରଳା ମହାଭାରତରେ ସାମାଜିକ ଜୀବନ—ଶ୍ରୀ ଦୀନବନ୍ଧୁ ରଥ
ଏମ୍. ଏ. ପିଏଚ୍.ଡ଼ି

୬ । ସାରଳା ସାହିତ୍ୟ ସମୀକ୍ଷା— ସଂପାଦନା ଓ ସଙ୍କଳନ ସାରଳା ସାହିତ୍ୟ
ସଂସଦ, କଟକ

୭ । ସାରଳା ମହାଭାରତ—ସଂପାଦନା ଓ ଆଲୋଚନା, ଡ଼ଃ କୃଷ୍ଣଚନ୍ଦ୍ର ସାହୁ

୮ । ଦେବପୀଠ ହିମାଳୟ—ଆର୍ତ୍ତତ୍ରାଣ ମିଶ୍ର

୯ । ଦ୍ୱାରକା ପ୍ରଭାସ—ଆର୍ତ୍ତତ୍ରାଣ ମିଶ୍ର

୧୦ । ଦ୍ୱାରକା ପଥେ—ଆର୍ତ୍ତତ୍ରାଣ ମିଶ୍ର

୧୧ । ଓଡ଼ିଶାରେ ସାଧୁସନ୍ଥ— ସଂପାଦନା—ବ୍ରଜମୋହନ ମହାନ୍ତି

୧୨ । ବୈଦିକ ସାହିତ୍ୟ ଓ ସଂସ୍କୃତି—ଅଭିନ୍ନ ଚନ୍ଦ୍ର ଦାଶ

୧୩ । ଭାରତୀୟ ଦର୍ଶନ—ଅଧ୍ୟାପକ ବଳଦେବ ଉପାଧ୍ୟାୟକୃତ, ଅନୁବାଦକ—
ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର—ଓଡ଼ିଶା ସାହିତ୍ୟ ଏକାଡ଼େମୀ

୧୪ । ଶ୍ରୀଜଗନ୍ନାଥ ତଥ୍ୟ ଓ ତତ୍ତ୍ୱ—ସଂକଳକ—ମୁରଲୀ ମୋହନ ଜେନା

୧୫ । ସନାତନ ଧର୍ମ—ପ୍ରଣେତା—ଗୋବର୍ଦ୍ଧନ ପୀଠାଧୀଶ ଜଗତଗୁରୁ
ଶ୍ରୀ ଭାରତୀ କୃଷ୍ଣ ତୀର୍ଥ ସ୍ୱାମୀ—ଅନୁବାଦକ ପଣ୍ଡିତ ରଘୁନାଥ ମିଶ୍ର

୧୬ । ଓଡ଼ିଶା ଇତିହାସ—ହରେକୃଷ୍ଣ ମହତାବ

୧୭ । ଓଡ଼ିଶାର ରାଜନୈତିକ ଇତିହାସ—ଶ୍ରୀ ବଳରାମ ମହାନ୍ତି

୧୮ । ଉଡ଼୍ରଜା ପ୍ରାକୃତ— ଡଃ ବେଣୀମାଧବ ପାଢ଼ୀ

୧୯ । ଆଶ୍ରମ ଜ୍ୟୋତି—ଫେବୃୟାରୀ ୧୯୮୭ ସଂପାଦକ—ଶଚୀନ୍ଦ୍ର କୁମାର ସ୍ୱାଇଁ
ଶାନ୍ତିଆଶ୍ରମ ପ୍ରେସ୍, ବେଦବ୍ୟାସ

20. Vedavyas—A birds eye view—S. K. Swain,
Vedvyas, Rourkela-4

୨୧ । ମନୁସଂହିତା ବା ମନୁସ୍ମୃତି—ରାମଶଙ୍କର ରାୟ

୨୨ । ଓଡ଼ିଶାର ଆଦିବାସୀ ସଂସ୍କୃତି— ଶ୍ରୀ ବଂଶୀଧର ମହାନ୍ତି

୨୩ । ଓଡ଼ିଆ ସାହିତ୍ୟର ଇତିହାସ—ଡଃ ବଂଶୀଧର ମହାନ୍ତି

୨୪ । ଅତୀତରେ ଓଡ଼ିଶା—ଶିବପ୍ରସାଦ ଦାଶ

୨୫ । ଓଡ଼ିଶାର ସାଂସ୍କୃତିକ ଇତିହାସ— ସମ୍ପାଦନା-ଓଡ଼ିଶା କଲଚରାଲ୍ ଫୋରମ୍

୨୬ । ପାତଞ୍ଜଳ ଯୋଗଦର୍ଶନ—ମହର୍ଷି ପାତଞ୍ଜଳ
ଅନୁବାଦ—ଯଯାତି କେଶରୀ ବଣ୍ଟାଳ
୨୭ । ସଂସ୍କୃତିର ଧାରା—ଶ୍ରୀ ରାମ ଚନ୍ଦ୍ର ତ୍ରିପାଠୀ
୨୮ । ଓଡ଼ିଶାର ଧର୍ମ—ଶ୍ରୀ ଭଗବାନ ପଣ୍ଡା
୨୯ । ପ୍ରାଚୀନ ଉତ୍କଳ— ଜଗବନ୍ଧୁ ସିଂହ
୩୦ । ଆର୍ଯ୍ୟ ସଂସ୍କୃତିର ମୂଳତତ୍ତ୍ୱ—ସତ୍ୟବ୍ରତ ସିଦ୍ଧାନ୍ତାଳଂକାର
ଅନୁବାଦ—ପ୍ରିୟବ୍ରତ ଦାସ
୩୧ । ଓଡ଼ିଆ ଭାଷାର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୩୨ । ଖଡ଼ିଆଳର ଇତିହାସ—ଶ୍ରୀମତୀ ରାଜଶ୍ରୀ ଦେବୀ
୩୩ । ପ୍ରାଚୀନ ଉତ୍କଳର ଧର୍ମ ଓ ପ୍ରତ୍ନତତ୍ତ୍ୱ—ପ୍ରଶାନ୍ତ କୁମାର ରାୟ
୩୪ । ଗଡ଼ଜାତ—ସ୍ମାରକୀ ସଂକଳନ—୧୯୮୬, ସଂପାଦକ—
ଭାଗୀରଥି ନେପାକ
୩୫ । ଗୀତା ମହାତ୍ମ୍ୟ—ଡଃ ମାୟାଧର ମାନସିଂହ
୩୬ । ସମ୍ବଲପୁର ଇତିହାସ—ଶ୍ରୀ ଶିବ ପ୍ରସାଦ ଦାଶ
୩୭ । ଓଡ଼ିଶାର ଶୈବ ସଂସ୍କୃତି—ଓଡ଼ିଶା କଲଚରାଲ୍ ଫୋରମ୍
୩୮ । ଓଡ଼ିଶାର ଶାକ୍ତ ସଂସ୍କୃତି—ଓଡ଼ିଶା କଲଚରାଲ୍ ଫୋରମ୍
୩୯ । ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ—ଓଡ଼ିଶା ସାହିତ୍ୟ ଏକାଡ଼େମୀ
ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ
40. Orissa District Gazetteers_ Sundargarh
41. History of Orissa _Dr. N. K. Sahu, Dr. P. K. Mishra and
Dr. J. K. Sahu
42. The Vedic Age__Vol-I, The History and culture of Indian
People__Bharatiya Bidya Bhavan
43 New Aspecets of History of Orissa__Sambalpur
University

## ଏହି ଲେଖକଙ୍କ ପ୍ରକାଶିତ ପୁସ୍ତକ—

୧ । ଶ୍ରୀ ନୃସିଂହ ନାଥ : ତତ୍ତ୍ୱ, ମନ୍ଦିର ଓ କ୍ଷେତ୍ର ପରିଚୟ
୨ । ଶ୍ରୀ ହରିଶଙ୍କର
୩ । ତୀର୍ଥକ୍ଷେତ୍ର ଶ୍ରୀ ନୃସିଂହନାଥ (ହିନ୍ଦୀ)
ରୂପାନ୍ତର : ଶ୍ରୀ ସ୍ୱରାଜ କୁମାର ଦାସ